❖ ଋଦ୍ଧୀଶ ସ୍ମରଣେ ❖




ଋଦ୍ଧୀଶ ଆଚାର୍ଯ୍ୟ ସ୍ମାରକୀ ଟ୍ରଷ୍ଟ

RUDHISH ACHARYA MEMORIAL TRUST

ସା/ପୋ.ଅ. : ଲଥାଙ୍ଗ, ଭାୟା : ରାହାମା

ଜିଲ୍ଲା : ଜଗତ୍‌ସିଂହପୁର-୭୫୪୧୪୦

# ରୁଧୀଶ ସ୍ମରଣେ



*ପ୍ରକାଶକ :*

'ରୁଧୀଶ ଆଚାର୍ଯ୍ୟ ସ୍ମାରକୀ ଟ୍ରଷ୍ଟ'ର
ଅନୁମୋଦନ କ୍ରମେ
ଶ୍ରୀ ହୃଷୀକେଶ ଆଚାର୍ଯ୍ୟ
ସା/ପୋ.ଅ. : ଲଥାଙ୍ଗ, ଭାୟା : ରାହାମା
ଜିଲ୍ଲା : ଜଗତ୍‌ସିଂହପୁର-୭୫୪୧୪୦



ଦକ୍ଷିଣା :
(ଆପଣଙ୍କ ସ୍ୱତଃ ସ୍ୱେଚ୍ଛା ଅର୍ଘ୍ୟ ଅବଦାନ
ରୁଧୀଶଙ୍କ ସ୍ମୃତିରକ୍ଷା ନିମିତ୍ତ ଉଦ୍ଦିଷ୍ଟ)

ଅଙ୍ଗସଜ୍ଜା : ଗ୍ରାଫିକ୍ସ ସୁପ୍ରିୟା
ମାନସିଂହପାଟଣା, କଟକ

ମୁଦ୍ରଣ : ବନ୍ଦନା ଅଫ୍‌ସେଟ୍ ପ୍ରେସେସ୍
ଖଟବିନ ସାହି, କଟକ

# RUDHISH SMARANE



*Publisher :*
By the permission of the
'Rudhish Acharya Memorial Trust',
Hrusikesh Acharya
At/P.O. : Lathang, Via Rahama
Dist : Jagatsinghpur-754140
Cell : 09937445211

**Price :** Nil (Donation may be accepted by the Trust)



Typesetting :
**Graphics Supriya**
Mansinghpatna, Cuttack

Printed at :
**Bandana Offset Process**
Khatbin Sahi, Cuttack

# ଉତ୍ସର୍ଗ



ରବୀଶଙ୍କ ଅମ୍ଳାନ ସ୍ମୃତିରେ

– ସମ୍ପାଦନା ମଣ୍ଡଳୀ

*"The plans of God*
*are very wonderful–*
*beyond your*
*highest hopes*
*you just to wait*
*for the right movement*
*wait is the word*
*My dearest word."*

# ରବୀଶ ସ୍ମରଣେ

## ସଂକ୍ଷିପ୍ତ ପରିଚୟ

| | | |
|---|---|---|
| ନାମ | : | ରବୀଶ ଆଚାର୍ଯ୍ୟ |
| ଜନ୍ମ | : | ୨୦, ନଭେମ୍ବର, ୧୯୮୩ |
| ଶିକ୍ଷା | : | ଏମ୍.ଏସ୍‌ସି. (ପ୍ରାଣୀବିଜ୍ଞାନ), ଏମ୍.ଫିଲ୍. (ପ୍ରାଣୀବିଜ୍ଞାନ), ଏଲ୍‌ଏଲ୍.ବି. (ଉତ୍କଳ), ପି.ଏଚ୍‌ଡି. ସ୍କଲାର୍ (ଉତ୍କଳ) |
| ବୃତ୍ତି | : | ଡେମୋନ୍‌ଷ୍ଟ୍ରେଟର୍ (ପ୍ରାଣୀବିଜ୍ଞାନ), କଲେଜ ଅଫ୍ ବେସିକ୍ ସାଇନ୍‌ସ ଆଣ୍ଡ ହ୍ୟୁମାନିଟିଜ୍, ଓ.ୟୁ.ଏ.ଟି., ଭୁବନେଶ୍ୱର |
| ସତ୍‌ସଙ୍ଗ | : | ଯାଜକ ପାଞ୍ଜା ପ୍ରାପ୍ତି ୨୦୧୩ ଏପ୍ରିଲ୍ |
| ସ୍ଥାୟୀ ଠିକଣା | : | ସା/ପୋ.ଅ. : ଲଥାଙ୍ଗ, ଭାୟା : ରାହାମା ଥାନା : ତିର୍ତ୍ତୋଲ, ଜିଲ୍ଲା : ଜଗତ୍‌ସିଂହପୁର |
| ମୃତ୍ୟୁ | : | ୧୮, ଅଗଷ୍ଟ ୨୦୧୪, ପହିଲା ଭାଦ୍ରବ ସକାଳ |
| ମୃତ୍ୟୁ ସମୟର ଠିକଣା | : | କ୍ୱାର୍ଟର୍ସ ନଂ. ୨ଆର୍.ବି., ଏଫ୍-୪୪ ଓ.ୟୁ.ଏ.ଟି. କଲୋନୀ, ଭୁବନେଶ୍ୱର |
| ରୁଚି | : | ପଢ଼ାପଢ଼ି, ଲେଖାଲେଖି ଓ ଗବେଷଣା |
| ଅତିପ୍ରିୟ | : | ଶ୍ରୀଶ୍ରୀଠାକୁର ଓ ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦା |
| ପ୍ରିୟଜନ | : | ପିତା ଓ ମାତା |
| ପ୍ରିୟବସ୍ତୁ | : | ବିଭିନ୍ନ ପ୍ରକାର ବହି ଓ ପତ୍ରପତ୍ରିକା |
| ପିତା | : | ହୃଷୀକେଶ ଆଚାର୍ଯ୍ୟ (ସ.ପ୍ର.ର., ସତ୍‌ସଙ୍ଗ) ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ମାଧ୍ୟମିକ ଶିକ୍ଷା ବିଭାଗ ଓଡ଼ିଶା |
| ମାତା | : | ମାଳତୀ ଆଚାର୍ଯ୍ୟ |
| ପତ୍ନୀ | : | ସ୍ମୃତିରେଖା ଦାଶ (ଆଚାର୍ଯ୍ୟ) |

# ସୂଚୀ

## ଆତ୍ମୀୟ-ସ୍ୱଜନଙ୍କ ଶ୍ରଦ୍ଧାଞ୍ଜଳି



## ରବୀଶ ରଚନାବଳୀ

# ଋଦ୍ଧୀଶ ସ୍ମରଣେ

## ହତଭାଗ୍ୟ ପିତାର ଅଶ୍ରୁଳ ନିବେଦନ

ମୁଁ ତାକୁ ପିଲାଦିନୁ ସ୍ନେହରେ 'ବାପୁ' ବୋଲି ଡାକେ । ସତ୍‌ସଙ୍ଗର 'ଯୁଗାଚାର୍ଯ୍ୟ ଶ୍ରୀଶ୍ରୀବଡ଼ଦା' ତା'ର ନାମକରଣ କରିଥିଲେ 'ଋଦ୍ଧୀଶ' । ଋଦ୍ଧି+ଈଶ=ଋଦ୍ଧୀଶ । 'ଋଦ୍ଧି' ଶବ୍ଦର ଅର୍ଥ ବୃଦ୍ଧି, ଉନ୍ନତି, କୃତକାର୍ଯ୍ୟତା ଇତ୍ୟାଦି । କ୍ଷୁଦ୍ର ଜୀବନକାଳ ଭିତରେ ସେ ତା'ର ନାଆଁର ସାର୍ଥକତା ପ୍ରତିପାଦନ କରିଯାଇଛି । ନାମକରଣ ଉପଲକ୍ଷ୍ୟେ ମୋର ଲଥାଙ୍ଗସ୍ଥ ବାସଭବରେ ଏକ ବିଶେଷ ସତ୍‌ସଙ୍ଗ ମୋର ପିତା ତଥା ତା'ର ପିତାମହ (ସ୍ୱର୍ଗତ ରମାନାଥ ଆଚାର୍ଯ୍ୟ) ଆୟୋଜନ କରିଥିଲେ । ତାକୁ ମୋର ପିତା ଏତେ ସ୍ନେହ କରୁଥିଲେ ଯେ, ପିଲାବେଳେ ସେ ଟିକିଏ କାନ୍ଦିଲେ ମୋ ପିତା ସହ୍ୟ କରିପାରୁ ନ ଥିଲେ ।

ପିଲାଟି ଦିନରୁ ବିଶେଷତଃ ହେତୁ ପାଇବା ସମୟରୁ ବହୁ ଭଲଗୁଣ ତା'ଠି ଲକ୍ଷ୍ୟ କରିଛୁ । କିନ୍ତୁ ମୋର ପୁଅ ହୋଇ ସେ ଜନ୍ମିଥିଲା ବୋଲି ସେସବୁ ଗୁଣକୁ ଗୁରୁତ୍ୱ ଦେଇପାରି ନ ଥିଲି । ତା'ର ସମବୟସୀଙ୍କ ସହ ବିଶେଷଭାବେ ଖେଳଧୂଳା କରିପାରେନି; ବରଂ ବୟସ୍କମାନଙ୍କ ସହ ଗପସପ କରିବା, ବସାଉଠା କରିବାକୁ ଭଲପାଉଥିଲା । ଏ ଗୁଣ ତା'ର ସବୁଦିନିଆ । ବରିଷ୍ଠମାନଙ୍କ ସହ ତା'ର ବେଶି ସମ୍ପର୍କ ଓ ଯୋଗାଯୋଗ । ବୟସ୍କ ବ୍ୟକ୍ତିଙ୍କ ପରି କଥା କହିବା ଓ ଉପଦେଶ ଦେବା ପ୍ରାୟ ସବୁ ସମୟରେ । ବଡ଼ମଣିଷଙ୍କ ପରି ପିଲାମାନଙ୍କ ଖେଳ-କୌତୁକ ସେ ଦେଖେ । ସ୍କୁଲ୍ ପାଠ ଆରମ୍ଭ ହେବା ଦିନଠାରୁ ବହି ପଢ଼ିବା ଓ ବହି ତଥା ପତ୍ରପତ୍ରିକା ସଂଗ୍ରହ କରିବାର ଝୁଙ୍କ୍ ତା'ର ଜୀବନସାରା ଥିଲା । ତା'ର ଓ.ୟୁ.ଏ.ଟି. କ୍ୱାର୍ଟର୍ସ୍‌ରେ ବହୁ ବହି ଓ ପତ୍ରପତ୍ରିକା ରଖିଥିଲା । ସେସବୁକୁ ଏପଟ ସେପଟ କଲେ ସେ ତା' ମାଆ ଓ ସ୍ତ୍ରୀ ଉପରେ ଚିଡ଼େ । କହେ - କେତେ କଷ୍ଟ କରି ଏସବୁ ସଂଗ୍ରହ କରିଛି । ସୁରକ୍ଷିତ ରଖିବାର ଦାୟିତ୍ୱ ମୋର ବୋଲି ଭାବିଲି । ଏଣୁ ତା'ର କର୍ମସ୍ଥଳୀ Basic Science

Collegeର Zoology ବିଭାଗକୁ Zoology ବହିସବୁ (ପ୍ରାୟ ପଚାଶ ଖଣ୍ଡରୁ ଊର୍ଦ୍ଧ୍ୱ) ଏବଂ ଆଧ୍ୟାତ୍ମିକ ପୁସ୍ତକ ଓ ସତ୍‌ସଙ୍ଗ ବହିସବୁକୁ ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ର ପୁସ୍ତକାଳୟକୁ ଦାନ ସୂତ୍ରରେ ଦେଇଦେଇଛି । ଆଉ ଅବଶିଷ୍ଟ ବହି, ପତ୍ରପତ୍ରିକା, ତା'ର ନିଜସ୍ୱ ଲେଖା, ବ୍ୟବହୃତ କିଛି ଜିନିଷ ମୋ ଘରେ ଏକ କ୍ଷୁଦ୍ର ସ୍ୱତନ୍ତ୍ର କୋଠରିରେ ସ୍ମୃତିସ୍ୱରୂପ ସାଇତି ରଖିଛି । କେହି ଗୁଣଗ୍ରାହୀ ଭବିଷ୍ୟତରେ ଯଦି ଦେଖିବେ ଓ ଶିକ୍ଷାଲାଭ କରିବେ – ଏହି ଆଶାରେ ।

ପିଲାଦିନରୁ ସେ କେବେ ଦୁଷ୍ଟାମି କରିବା ବା ଅବାଧ୍ୟ ହେବା ମୋ ମନେପଡୁନି । ମୁଁ ତାକୁ ସାମାନ୍ୟଭାବେ ମାଡ଼ ମାରିଥିବା ମୋର ମନେ ନାହିଁ । ଯଦି କେବେ ମୁଁ ଚିଡ଼ିଯାଇ ଗାଳି ଦେଉଥିଲି, ସେ ନୀରବରେ ସହିଯାଇ ଠିଆହୋଇ ଆଖିରୁ ଲୁହ ଝରାଇଦେଉଥିଲା — ତାହା ପୁଣି କେବେ କେମିତି । ମୁଁ ଟିକେ ରାଗି ଲୋକ । ଯଦି ଘରେ କେବେ କୌଣସି କାରଣରୁ ରାଗୁଥିଲି, ସେ ହୁଏତ ଶୁଣିଥିବ, ସେତେବେଳେ କିଛି କୁହେନି, ପରେ ଧୀରସ୍ଥିର ଭାବେ ମୋ ପାଖରେ ଠିଆହେବ, ମୁଁ ତା' ଆଡ଼କୁ ଚାହିଁଲେ କହିବ — "ନନା ! ଆପଣ ଏତେ ରାଗୁଛନ୍ତି କାହିଁକି ? ଚିଡୁଛନ୍ତି କାହିଁକି ? ଆପଣଙ୍କ ଦେହ ଖରାପ ହେବ ।" ମୁଁ ନୀରବ ରୁହେ । ଆଜି ଏକଥା କହିବାକୁ ମୋ ପାଖରେ ସେ କାଇଁ ? ଅବଶ୍ୟ ମୋର ରାଗ, ଦମ୍ଭ, ଅଭିମାନ ସବୁକିଛି ସେ ଗଲାପରେ କୁଆଡ଼େ ଚାଲିଯାଇଥିବାର ଅନୁଭବ କରୁଛି ।

ସେ ମାତୃଗର୍ଭରେ ଥିବାବେଳଠାରୁ ତା' ମାଆ ତା'ପାଇଁ ଇଷ୍ଟଭୃତି କରୁଥିଲେ । ଟିକିଏ ହେତୁ ହେବା ପରେ ସେ 'ନାମ' କରେ ଓ ଇଷ୍ଟଭୃତି କରେ । ଦଶ ବର୍ଷ ବୟସ ପରେ ସେ ୧୯୯୪ ମସିହାରେ ତା'ର ଉପନୟନ ସଂସ୍କାର କରାଇଥିଲି । ବ୍ରତୋପନୟନ ପରେ ପରେ ସେ ଦୀକ୍ଷା ନେବା କଥା । ସେ କିନ୍ତୁ ଦୀକ୍ଷା ନେବା ଉପରେ ଜୋର୍ ଦିଏ । ମୁଁ ପୁଣି ବୁଝାଇ କହିଲି — "ଆମେ ଆଶ୍ରମକୁ ଯିବା, ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦାଙ୍କ ଆଶୀର୍ବାଦରେ ତୁ ଦୀକ୍ଷା ନେବୁ ।" ସେ ବୁଝିଗଲା । ତାକୁ ଦେଇଥିବା କଥାନୁସାରେ ୧୯୯୫ ବିଜୟା ଦଶମୀ (ଦଶହରା) ଉତ୍ସବ ସମୟରେ ତାକୁ ଓ ତା'ର ମାଆକୁ ନେଇ

  

ଆଶ୍ରମ ଗଲି । ପରମ ପୂଜ୍ୟପାଦ ଆଚାର୍ଯ୍ୟଦେବଙ୍କ ନିକଟକୁ, ତାକୁ ନେଇ ଦୀକ୍ଷା ପ୍ରାର୍ଥନା କଲି । ଶ୍ରୀଶ୍ରୀଦାଦା ପଚାରିଲେ — "ବୟସ କେତେ ?"

ମୁଁ କହିଲି - ଏଗାର ପୂରିଛି ।

ଶ୍ରୀଶ୍ରୀଦାଦା ଦୀକ୍ଷା ନେବାର ଆଶୀର୍ବାଦ ତାକୁ ପ୍ରଦାନ କଲେ ।

ମୁଁ ପଚାରିଲି – ଯେଉଁ ଋତ୍ୱିକ ଦୀକ୍ଷା ପ୍ରଦାନ କରିବେ ?

– ତୁମେ ଯାହାକୁ ଭଲ ବୁଝ ।

– ଆପଣ କହିଦେଲେ ଭଲ ହୁଅନ୍ତା ।

ଶ୍ରୀଶ୍ରୀଦାଦା ପୁନରାୟ କହିଲେ – ତୁମେ ଯାହାକୁ ଭଲ ବୁଝ ।

ଆଉ ଅଧିକ କିଛି ନ କହି ମୁଁ ଆଉ ସିଏ ପ୍ରଣାମ କରି ଉଠିଆସୁଛୁ, ଶ୍ରୀଶ୍ରୀଦାଦା ଟିକେ ଚିନ୍ତାକରି କହିଲେ, ଭୁବନେଶ୍ୱରର ପରିଡ଼ାଦା' (ଶ୍ରୀଯୁକ୍ତ ଡ. ଗୋପୀନାଥ ପରିଡ଼ା, ସ.ପ୍ର.ଋ.)ଙ୍କ ମାଧ୍ୟମରେ ଦୀକ୍ଷା ନେବାକୁ । ଅକ୍ଟୋବର ୬ ତାରିଖ ଦିନ ଆନୁଷ୍ଠାନିକ ଭାବେ 'ସତ୍‌ଦୀକ୍ଷା' ଗ୍ରହଣ କରେ ଏବଂ ନୀରବଚ୍ଛିନ୍ନ ଭାବେ କାର୍ଯ୍ୟ କରିଯାଏ ।

ତା' ପିଲାଦିନର କେତୋଟି କଥା ମନେପଡୁଛି । ଛୋଟବେଳେ ୧୯୮୯ ମସିହା ଜୁନ୍ ମାସରେ ମୋ ସହିତ ପୁରୀ ଯାଇଥାଏ । ସେତେବେଳେ ପରମପୂଜ୍ୟପାଦ ଶ୍ରୀଶ୍ରୀବଡ଼ଦା' ପୁରୀରେ ଅବସ୍ଥାନ କରୁଥାଆନ୍ତି । ଆମେ ସତ୍‌ସଙ୍ଗ ଠାକୁରବାଡ଼ିକୁ ଗଲୁ । ଶ୍ରୀଶ୍ରୀଠାକୁର ଓ ଶ୍ରୀଶ୍ରୀବଡ଼ମା'ଙ୍କୁ ଦର୍ଶନ-ପ୍ରଣାମ କଲା ପରେ ଶ୍ରୀଶ୍ରୀବଡ଼ଦା'ଙ୍କୁ ଦର୍ଶନ ଓ ପ୍ରଣାମ ନିବେଦନ କଲୁ । ବଡ଼ଦା'ଙ୍କୁ ଦର୍ଶନ କଲାପରେ ସେ ଅଭିଭୂତ ହୋଇପଡ଼ିଲା । ସତେଯେପରି ନୂଆ କିଛି ଦେଖିଲା । ଘରକୁ ଆସିବା ପରେ ତା' ବୋଉକୁ କହିଲା – "ବୋଉ ! ବଡ଼ଦା ସତରେ ବଡ଼ଦା', ଫଟୋ ନୁହଁନ୍ତି । ବସିଛନ୍ତି, କଥାବାର୍ତ୍ତା କରୁଛନ୍ତି, ହାତଯୋଡ଼ି ପ୍ରଣାମ କରୁଛନ୍ତି... ।" ଫଟୋ, ମୂର୍ତ୍ତି ଇତ୍ୟାଦିଙ୍କୁ ପୂଜା କରିବାରେ ଆମେ ଅଭ୍ୟସ୍ତ । ଜୀବନ୍ତ ତଥା ମୂର୍ତ୍ତ ଭଗବାନ୍‌ଙ୍କୁ ପୂଜା କରିବାରେ

ଆମର ଅଭ୍ୟାସ ନାହିଁ । ତା' ପରେ କେତେଥର ସେ ଶ୍ରୀଶ୍ରୀବଡ଼ଦା'ଙ୍କୁ ଦର୍ଶନ କରିଛି । ଅନେକଥର ପୁରୀ ସତ୍ସଙ୍ଗ ଠାକୁରବାଡ଼ିରେ ସ୍ୱେଚ୍ଛାସେବୀ ଭୂମିକା ମଧ ତୁଲାଇଛି ।

ଚତୁର୍ଥ-ପଞ୍ଚମ ଶ୍ରେଣୀରେ ପଢ଼ିବାବେଳର ଘଟଣାଟିଏ । ସେ କ୍ଲାସ୍‌ରେ ଭଲ ପଢ଼େ । ଏଣୁ ଶିକ୍ଷକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ସ୍ୱାଭାବିକ । ଏହି ଗୁଣଟି ତା'ର ସବୁଦିନିଆ । ଥରେ କ୍ଲାସ୍‌ରେ ପିଲାମାନେ ପାଟିତୁଣ୍ଡ କରୁଥାଆନ୍ତି । ପ୍ରଧାନ ଶିକ୍ଷକ ନିରଞ୍ଜନ ନାୟକ ଆସି ଦେଖିଲେ – ସବୁପିଲା ପାଟିତୁଣ୍ଡ କରୁଛନ୍ତି । ଏଇ ଏକୁଟିଆ ବସି ପଢ଼ାପଢ଼ି କରୁଛି । ଶିକ୍ଷକ କହିଲେ – "ରବ୍ଧୀଶ ! ଗୋଟାଏ ଲମ୍ବା ଛାଟିଆ ଆଣ୍ ତ !" ପ୍ରଥମେ ସେ ଯିବାକୁ ଅମଙ୍ଗ ହୁଏ, ଥ-ଥ-ମ-ମ ହୁଏ, କାରଣ ସେ ବାଡ଼ି ଆଣିଲେ ତା' ସାଙ୍ଗମାନେ ମାଡ଼ ଖାଇବେ । ଶିକ୍ଷକଙ୍କ ଦ୍ୱିତୀୟଥର ତାଗିଦ୍‌ରେ ସେ ବାଡ଼ି ଆଣେ ଏବଂ ସାର୍‌ଙ୍କୁ କୁହେ – ପିଲାଙ୍କୁ ଅଳ୍ପ ମାରିବାକୁ । (ଏଘଟଣାଟି ମୁଁ ଗରେଇ ଗ୍ରାମର ଭୋବନୀ ମହାରଣାଙ୍କଠାରୁ ଶୁଣିଥିଲି । ସେ ସେଦିନ ସ୍କୁଲ୍‌ରେ କାମ କରୁଥିଲେ ଓ ଘଟଣାର ପ୍ରତ୍ୟକ୍ଷଦର୍ଶୀ ଥିଲେ ।)

ସେ ପିଲାଦିନରୁ ଥିଲା ସତ୍ୟବାଦୀ । ମୋ ସାମନାରେ ମିଛ କେବେବି କହିନି । ମଣିଷର କିଛି କିଛି ବ୍ୟକ୍ତିଗତ ଜୀବନ ଥାଏ । ତା'ର ମଧ ଥିଲା । କିନ୍ତୁ ମୋ ପାଖରେ ଦ୍ୱିଧାହୀନ ଭାବେ ପ୍ରକାଶ କରେ ଏବଂ ମୁଁ ଯାହା ସମାଧାନ ଦିଏ ମାନିନିଏ ।

ହାଇସ୍କୁଲ୍‌ରେ ଅଷ୍ଟମ ଶ୍ରେଣୀରେ ପ୍ରବେଶ କଲା ପରେ ମୋ ସାଙ୍ଗରେ ଆଶ୍ରମକୁ ଯାଏ ଏବଂ ପରମପୂଜ୍ୟପାଦ ଶ୍ରୀଶ୍ରୀଦାଦାଙ୍କ ନିକଟରେ ନିଜେ ନିବେଦନ କରି ଆଶୀର୍ବାଦ ପ୍ରାପ୍ତ ହୁଏ ।

ହାଇସ୍କୁଲ୍‌ରେ ପଢ଼ିବାର ଶେଷବର୍ଷରେ ସେ ମୋ ସହିତ ଦେଓଘର ଯାଏ ଏବଂ ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦାଙ୍କୁ ଦେବାପାଇଁ ଏକ କଲମ କିଣି ନେଇଥାଏ । ଉତ୍ସବ ସମୟରେ ଭୀଷଣ ଭିଡ଼ । ପୁନଶ୍ଚ, ଶ୍ରୀଶ୍ରୀଦାଦାଙ୍କ ଦେହ ହଠାତ୍ ଅସୁସ୍ଥ

  

ହୋଇପଡ଼ିବାରୁ ଦର୍ଶନ ବନ୍ଦ୍ ହୋଇଯାଏ । ତିନି ଚାରିଦିନ ରହିବା ପରେ ବି ଶ୍ରୀଶ୍ରୀଦାଦାଙ୍କର ଦର୍ଶନ ହୋଇପାରେନି । ଆମର ଫେରିବା ସମୟ ହୋଇଯାଇଥାଏ । ପୂର୍ବ ସନ୍ଧ୍ୟାରେ ବାପ-ପୁଅ ଦୁହେଁ ଫିଲାନ୍ଥ୍ରୋପି ସାମନା ପ୍ୟାଣ୍ଡେଲ ପାଖରେ ବୁଲାବୁଲି କରୁଛୁ । ବାପୁ ମୋତେ ପଚାରିଲା – "ନନା ! ଦାଦାଙ୍କୁ କଲମଟି ଦେଇହେଲାନି !"

ମୁଁ କହିଲି – "ତାଙ୍କ ଉଦ୍ଦେଶ୍ୟରେ ଯେତେବେଳେ ଆଣିଛୁ, ସେଇଟି କ'ଣ ଘରକୁ ଫେରାଇ ନେବା ! ବରଂ ତାଙ୍କ ଆସନ ପାଖରେ ରଖି, ପ୍ରଣାମ କରିଯିବା ।" ଏହି କଥାବାର୍ତ୍ତା ଭିତରେ ଶ୍ରୀଶ୍ରୀଦାଦା ବାହାରକୁ ବାହାରିଲେ ଏବଂ ତାଙ୍କ ଆସନରେ ଉପବେଶନ କରିଲେ । ଲୋକବାକ କେହି ନ ଥିଲେ । ହଠାତ୍ ଭିଡ଼ ଜମିବାକୁ ଲାଗିଲା । ମୁଁ ବାପୁକୁ କହିଲି – "ତୁ ନିଜେ କଲମ ନେଇ ଶ୍ରୀଶ୍ରୀଦାଦାଙ୍କୁ ଦେଇଆସ ।" ସେ ତାହାହିଁ କଲା । ଶ୍ରୀଶ୍ରୀଦାଦାଙ୍କୁ କଲମ ଦେବାର ଦୃଶ୍ୟ ଆଜି ବି ମୋ ମାନସପଟରେ ଉଜ୍ଜୀବିତ । ଶ୍ରୀଶ୍ରୀଦାଦାଙ୍କର କି ଖୁସୀ ! ତାକୁ କୋଳକୁ ଆଉଜାଇ ନେଇ ତା' ମୁଣ୍ଡକୁ ଆଉଁଶି, ମୁଣ୍ଡରେ ହାତ ବୁଲାଇ କହିଲେ – "ଏ କଲମ ତୁ ନେ ଲେଖିବୁ, ଭଲ ପାଠ ପଢ଼ିବୁ, ଭଲ ମଣିଷ ହେବୁ, ଆଉ ଠାକୁରଙ୍କ କାମ କରିବୁ ।" ତାଙ୍କ ଆଶୀର୍ବାଦକୁ ସ୍ୱଳ୍ପଜୀବନକାଳ ଭିତରେ ସେ ଆଚରଣ କରିବାକୁ ଚେଷ୍ଟା କରିଛି ଏବଂ ଏହା ଦେଖି ମୁଁ ମଧ୍ୟ ବହୁତ ଖୁସୀ ହୋଇଛି ।

ତା' ଜୀବନର ପ୍ରତିଟି ସ୍ତରରେ ତାକୁ ଠିକ୍‌ବାଟରେ ପରିଚାଳିତ କରିବାରେ ମୁଁ କେବେ ବି ବାଟ ଭୁଲିନି । ସବୁକାମରେ ତା'ର ଠାକୁର, ସବୁଥିରେ ଆଚାର୍ଯ୍ୟଦେବଙ୍କ ଆଶୀର୍ବାଦ । ଓ.ୟୁ.ଏ.ଟି.ରେ ଚାକିରି ପାଇବା ପରେ ସେ ନିଜେ ନିଜେ ଦେଓଘର ଯାଏ ଏବଂ ପ୍ରତିବର୍ଷ ଶ୍ରୀଶ୍ରୀଦାଦାଙ୍କ ଜନ୍ମତିଥିକୁ ଦେଓଘର ଯାଉଥିଲା । କେବେ ବି ଖାଲି ହାତରେ ଯାଏନି । ବିଶେଷତଃ ଦାଦାଙ୍କପାଇଁ ଭଲ ଭଲ ବହିସବୁ ନେଇ ନିବେଦନ କରେ ।

ତାକୁ ୨୯ ପୂରି ୩୦ ବର୍ଷ ଚାଲିଲା । ତା' ବିବାହ ବ୍ୟବସ୍ଥାପାଇଁ ମୁଁ ତତ୍ପର ହେଲି । ସେ କିଛିଦିନ ଡେରି କରିବାକୁ ଚାହୁଁଥିଲା । ତା' ମାଆକୁ

କହୁଥିଲା – "ବିଭାଘର ହେଲେ ପାଞ୍ଚବର୍ଷ ପଛେଇଯିବି । ପି.ଏଚ୍.ଡି. କାମ ସରୁ, ତା' ପରେ ଦେଖିବା । ଦରମା ବଢୁ, ଅଳ୍ପ ପଇସାରେ ଭୁବନେଶ୍ୱରରେ ଚଳିବା କଷ୍ଟ ।" ତା' ମାଆ ତାକୁ ବୁଝାଇଲା – "ଆମେ କାମ ସାରିଲେ ଆମ ଦାୟିତ୍ୱ ସରିବ । ତୋ ନନା ପୁଣି ବିଭାଘର ପରେ ପାଠପଢ଼ି ପରୀକ୍ଷା ଦେଇ ପାଶ୍ କଲେ । ମୁଁ ତୋ ନନାଙ୍କୁ କହିବି ମାସକୁ ମାସ ତୋତେ ଟଙ୍କା ଦେବେ । ତୋର ଅସୁବିଧା ହେବନି ।" ଶୁଣି ହସିଲା, କହିଲା – "ପାଠ ପଢ଼ିବାବେଳେ ତ ନନାଙ୍କୁ ଟଙ୍କା ମାଗିନି, ଆଉ ଚାକିରି କଲା ପରେ ମାଗିବି ?" ମୁଁ ତାକୁ ବୁଝାଇ ଦେଲା ପରେ ବୁଝିଲା । ୨୦୧୩ ମସିହା ଏପ୍ରିଲ୍ ୧୫ରେ 'ଯାଜକ-ପାଞ୍ଜା' ପାଇଲା । ଏପ୍ରିଲ୍ ୧୭ ତାରିଖ ପୂର୍ବାହ୍ନରେ ମୁଁ ତାକୁ ନେଇ ପ୍ରଧାନ ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦାଙ୍କ ନିକଟରେ ତା'ର ବିବାହ ନିମିତ୍ତ ଆଶୀର୍ବାଦ ପ୍ରାର୍ଥନା କରେ । ଶ୍ରୀଶ୍ରୀଦାଦା ଶୁଣି ଖୁସୀ ହୁଅନ୍ତି ଏବଂ "ଭାଲୋ, ଖୁବ୍ ଭାଲୋ" – କହି ଆଶୀର୍ବାଦ ପ୍ରଦାନ କରନ୍ତି । ଆଚାର୍ଯ୍ୟଦେବଙ୍କ ଆଶୀର୍ବାଦ ପାଇବା ପରେ ସେ ଖୁବ୍ ଖୁସୀ ହୁଏ ଏବଂ ଏଇ ଖୁସୀ ମଧ୍ୟ ତା' ବୋଉ ପାଖରେ ଆନନ୍ଦରେ ପ୍ରକାଶ କରେ । ଶ୍ରୀଶ୍ରୀଦାଦାଙ୍କ ଆଶୀର୍ବାଦ ପରେ ପରେ ବିବାହ ପ୍ରସ୍ତାବ ଶୀଘ୍ର ଶୀଘ୍ର ଆସେ, ସ୍ଥିରୀକୃତ ମଧ୍ୟ ହୁଏ । ୨୦୧୩ ଡିସେମ୍ବର ୮ ତାରିଖରେ ବିବାହ କାର୍ଯ୍ୟ ସୁରୁଖୁରୁରେ ସମ୍ପାଦିତ ହୁଏ ଏବଂ ମୁଁ ଚାହୁଁଥିବା ପରି 'ବୋହୂ'ଟିଏ ମଧ୍ୟ ମୋ ଘରକୁ ଆସେ । ମୋ ପରିବାରରେ ଆନନ୍ଦର ହାଟ ବସିଯାଏ । ୨୦୧୪ ଫେବୃୟାରୀ ୭ରେ ପୁଅ ଓ ବୋହୂଙ୍କୁ ନେଇ ଶ୍ରୀଶ୍ରୀଦାଦାଙ୍କ ପାଖରେ ବିବାହ କାର୍ଯ୍ୟ ଶେଷ ହୋଇଥିବା ନିବେଦନ କରେ । ଦାଦା ବି ଖୁସି ହୁଅନ୍ତି ।

ସେ ଅନୃଣୀ । ତିରିଶ ବର୍ଷ ଆଠମାସ ଅଠେଇଶ ଦିନର ଜୀବନକାଳ ଭିତରେ ସେ ପରିବାର ତଥା ପରିଜନ ଓ ପାରିପାର୍ଶ୍ୱିକ ପ୍ରତି କର୍ତ୍ତବ୍ୟ ସୁଚାରୁରୂପେ କରିଯାଇଛି । ତା' ବୋଉ ଓ ଭଉଣୀ ଇତିନା ଓ ମମୁନାଙ୍କୁ ନେଇ ମେଡିକାଲ୍‌ରେ ଭଲ କରିବାଠୁ ଆରମ୍ଭ କରି ବନ୍ଧୁବାନ୍ଧବଙ୍କ ସହ ଯେପରି ସମ୍ପର୍କ ରଖିବା କଥା, ତାହା ସେ ରଖିଆସୁଥିଲା । ନିଜ କାମର ବାହାନା କରି ପରିବାର ଓ ପରିବେଶକୁ





ଅବହେଳା କରି ନାହିଁ । ଗୋଟିଏ ଟଙ୍କା ଧାର କରି ଚଳିବା ତା'ର ଅଭ୍ୟାସ ନ ଥିଲା । ଅଳ୍ପରେ ସନ୍ତୁଷ୍ଟ ରହିବା ତା' ଚରିତ୍ରର ଗୋଟିଏ ଲକ୍ଷଣୀୟ ଲକ୍ଷଣ । ଧାର, ବାକି, ଉଧାର କରିବା ସେ ପସନ୍ଦ କରେନି । ସେ ଥିଲା ନିର୍ଲୋଭ । ଗୋଟିଏ ଛୋଟ ଉଦାହରଣ ଦେବାକୁ ଇଚ୍ଛା କରୁଛି । ତା'ର ମାଉସୀ ପୁଅ ବଡ଼ ଭାଇ ଚିତ୍ତ (ଶ୍ରୀ ଚିତ୍ତରଞ୍ଜନ ମିଶ୍ର; ବାଘୁଆଠେଙ୍ଗ, କୁଜଙ୍ଗ)ର ସାନପୁଅ ନାଆଁ ଲେଖାପାଇଁ ଅଫିସ କାମପାଇଁ କିଛି ଟଙ୍କା ଦେଇଥିଲା । ଅଫିସ୍‌ରେ ଦେବାକୁ ପଡ଼ିଲା ନାହିଁ । ସେ ଏହି କାର୍ଯ୍ୟଟିକୁ କୁହାବୋଲା କରି କରାଇଦେଲା । ଚିତ୍ତକୁ ଫୋନ୍ କରି ସେ କହିଲା – "ଭାଇନା ! ଟଙ୍କା ଖର୍ଚ୍ଚ ହେଲାନି, ନେଇଯାଅ ।" ଚିତ୍ତ କହିଲା – "ସେ ଟଙ୍କା ତୋ ପାଖରେ ଥାଉ, ସୁବିଧା ଦେଖି ଦେବୁ ।" ସେ କିନ୍ତୁ ଟଙ୍କା ନେଇ ଚିତ୍ତର ସାନଭାଇ ବାବୁର ଘରେ ଦେଇଆସିଲା, କହିଆସିଲା – "ଟଙ୍କା କାମରେ ଲାଗିଲାନି, ଭାଇନାଙ୍କୁ ଫେରାଇ ଦେବ ।" (ରଦ୍ଧୀଶର ମୃତ୍ୟୁ ପରେ ଚିତ୍ତ ପାଖରୁ ଏ କଥା ଶୁଣିଲି ।)

ତା'ର କୌଣସି ଜାଗାରେ ଧାର-ଉଧାର, କରଜ, ବାକି, ଋଣ ଇତ୍ୟାଦି ନାହିଁ । ସବୁବେଳେ ତା' ସ୍ତ୍ରୀକୁ କୁହେ – ଆମର ଯେତିକି, ସେତିକିରେ ଚଳିବା । ଏଇ ଦୁଇ ଚାରି ବର୍ଷ ହେବ, ମୋତେ ପ୍ରାୟ କୁହେ – "ନନା ! ଧାର-ଋଣ ସବୁ ଶୁଝିଦିଅ । ଘରକାମ ଇତ୍ୟାଦି କାହିଁକି ଏତେ ବଢ଼ଉଛ !" ତା'ପାଇଁ ଯାହା ଯେତେ ତାକୁ ଦେଇଥିଲି, ସେସବୁ ମୋତେ ଶୁଝି ଦେଇଯାଇଛି ।

ଐତିହାସିକ କିମ୍ବଦନ୍ତୀଟିଏ ପଢ଼ିଥିଲି । ଗ୍ରୀକ୍‌ର ମହାନ୍ ମନୀଷୀ ଦାର୍ଶନିକ ସକ୍ରେଟିସ୍‌ଙ୍କୁ ବିଷପାନ କରି ମୃତ୍ୟୁବରଣ କରିବାପାଇଁ ରାଜଦଣ୍ଡ ମିଳିଥିଲା । କାରାଗାରରେ ବିଷପିଆଲା ଓଠ ପାଖକୁ ନେବାବେଳେ ଜନୈକ ଶିଷ୍ୟ କହିଲେ – ସମୟ ନିର୍ଘଣ୍ଟ ଅନୁସାରେ ବିଷ-ପାନର ସମୟ ହୋଇନି । ସକ୍ରେଟିସ୍ କହିଲେ – ବିଷପାନ ତ କରିବାକୁ ହେବ । ଆଗପଛ କ'ଣ ? ଏହା କହି ହସି ହସି ବିଷପାତ୍ରକୁ ଶେଷ କରିଦେଲେ ଓ ଚଦରଟିଏ ଘୋଡ଼ିହୋଇ ଶୋଇପଡ଼ିଲେ । ପୁଣି ଉଠିପଡ଼ି ପାଖରେ ଥିବା ଜଣେ ଶିଷ୍ୟଙ୍କୁ କହିଲେ ଯେ, ପାଖ ପଡ଼ୋଶୀ ପାଖରୁ ଚାରୋଟି କୁକୁଡ଼ାଛୁଆ ସେ ଧାର ଆଣିଥିଲେ – ଦେଇପାରି ନାହାନ୍ତି ।

ତାଙ୍କୁ ଯେପରି ନିଶ୍ଚିତ ଭାବେ କୁକୁଡ଼ାଛୁଆ ଚାରୋଟି ଦିଆଯାଏ – ଏହା କହି ସକ୍ରେଟିସ୍ ଚଦର ଘୋଡ଼ିହୋଇ ଶୋଇପଡ଼ିଲେ । ଶିଷ୍ୟମାନେ ବୁଝିଲେ ଯେ ସେମାନଙ୍କର ମହାନ୍‌ଗୁରୁ ଅନୃଣୀ ହୋଇଯିବାକୁ ଚାହାନ୍ତି । ଏହାହିଁ ହେଉଛି ମହାନ୍ ଆତ୍ମାମାନଙ୍କର ଲକ୍ଷଣ । ରବ୍ଧୀଶର ଏଇ ଲକ୍ଷଣରୁ ଆଜି ଭାବି ହେବାକୁ ହେଉଛି ଯେ, କାହାକୁ ମୁଁ ସବୁଦିନପାଇଁ ହରେଇଲି !!

ସେ ଥିଲା ପ୍ରଚଣ୍ଡ ସ୍ୱାଭିମାନୀ । କଲେଜରେ ପାଠ ପଢ଼ିଲାବେଳେ ମୁଁ ତାକୁ ମଟର ସାଇକେଲ୍, ସ୍କୁଟର୍ ଚଳାଇବା ଶିଖିବାକୁ କହିଲି । ସେ କିନ୍ତୁ କାହାଠାରୁ ମାଗି ବା ଅନ୍ୟର ଗାଡ଼ି ଆଣି ଚଳାଇବାକୁ ଇଚ୍ଛା କଲାନି । ମୁଁ ଗୋଟାଏ ସେକେଣ୍ଡହ୍ୟାଣ୍ଡ ସ୍କୁଟର୍ କିଣିବା ପରେ ସେ ଚଳାଇଥିଲା । ତା' ପରେ ମୋ ସ୍କୁଟି ଚଲାଏ । ଓ.ୟୁ.ଏ.ଟି.ରେ ଚାକିରି କଲାପରେ ବାଇକ୍ କିଣିଲା । ସେ କାହାକୁ un-due request କରେନି ବା ନୀତି-ନିୟମ ସହିତ ସାଲିସ୍ ପ୍ରାୟ କରେନି । ସେ ଟାଇମ୍ସ୍ କଲେଜରେ ଅଧ୍ୟାପନା କରୁଥିବାବେଳେ କୌଣସି ଏକ ନୀତିଗତ କାରଣରୁ କର୍ତ୍ତୃପକ୍ଷଙ୍କ ସହ ମତାନ୍ତର ହେଲା ଏବଂ ସଙ୍ଗେ ସଙ୍ଗେ ଇସ୍ତଫାପତ୍ର ଦେଇଦେବାକୁ ବସିଲା । ପାଖରେ ଥିଲେ ବୟସ୍କ ଶିକ୍ଷକ ଓ ମୋର ଜଣାଶୁଣା ବନ୍ଧୁ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ନନ୍ଦ । ବହୁ ବୁଝାଶୁଝା କରି ସେ ତାକୁ ଇସ୍ତଫା ଦେବାରୁ ନିବୃତ୍ତ କରେଇଥିଲେ । ଏହାର ଅଳ୍ପଦିନ ପରେ ଶ୍ରୀଯୁକ୍ତ ନନ୍ଦ ଜଗତ୍‌ସିଂହପୁରରେ ଦେଖାହେବା ଅବସରରେ ମୋତେ ଏ ଘଟଣା କହିଥିଲେ ଏବଂ ମୋତେ କହିଲେ - " ଆଚାର୍ଯ୍ୟବାବୁ ! ଆପଣଙ୍କ ପରି "principle minded, sincere & strict to the principle" – ଏଇ କଥା ସ୍ମୃତିପଟକୁ ଆସିଲାବେଳେ ଭାବୁଛି – ମୋପରି ଯିଏ, ଯାହାକୁ ଆହୁରି ଆହୁରି ଭଲ କରିବାକୁ ଯତ୍ନ କରି ଶୁଦ୍ଧ ସୁବର୍ଣ୍ଣଖଣ୍ଡ ପରି ଗଢ଼ି ତୋଳିଥିଲି, ସେ ଆଜି କୁଆଡ଼େ ଚାଲିଗଲା !! ମୋର ସମସ୍ତ ଭଲଗୁଣ ତା' ଚରିତ୍ରରେ ଆହୁରି ଆହୁରି ବିକଶିତ ହୋଇଉଠିଥିଲା; କିନ୍ତୁ ମୋ ଚରିତ୍ରରେ ଥିବା କୌଣସି ଖରାପଗୁଣ ତା' ଚରିତ୍ରକୁ ସ୍ପର୍ଶ କରି ନ ଥିଲା ।

ପିଲାଟି ଦିନରୁ ତା' ଚରିତ୍ରରେ ବୈରାଗ୍ୟ ଭାବର ଝଲକ୍ ଦେଖିଥିଲି; କିନ୍ତୁ ଏତେଟା ଗୁରୁତ୍ୱ ଦେଇ ନ ଥିଲି । ତା'ର ପୋଷାକ ପରିଚ୍ଛଦ, ଶୋଇବା,

ବସିବା-ଉଠିବା, ବୁଲାବୁଲି ବା ଭ୍ରମଣ ଇତ୍ୟାଦିରେ ସେ ଅତି ସରଳ ଜୀବନ ଯାପନ କରୁଥିଲା । ମୁଁ ତା'ପାଇଁ ପୋଷାକ-ପରିଚ୍ଛଦଠାରୁ ଆରମ୍ଭ କରି ଯାବତୀୟ ନୂଆ ନୂଆ ଜିନିଷ କିଣି ଦେଉଥିଲି; କିନ୍ତୁ ତା'ର ଏତେଟା ଆଗ୍ରହ ନ ଥାଏ ସେସବୁ ସୌକିନ୍ ପଦାର୍ଥ ପ୍ରତି । କେବଳ ନୂଆ ନୂଆ ବହି ଓ ପତ୍ରପତ୍ରିକା ଦେଖିଲେ ସେ ଖୁସୀ ହୁଏ – ଏଇଟି ତା'ର ସବୁଦିନିଆ ସ୍ୱଭାବ ।

'ବୈରାଗ୍ୟ' ଚର୍ଚ୍ଚା – 'ଗୀତାପ୍ରେସ୍' ପ୍ରକାଶିତ ପରମ ଶ୍ରଦ୍ଧେୟ ଜୟଦୟାଲ୍ ଗୋୟନ୍ଦକାଙ୍କ ଲିଖିତ ପୁସ୍ତକରେ ପଢ଼ିଥିଲି – "ଅନ୍ଧକାର ଏବଂ ପ୍ରକାଶ ମଧ୍ୟରେ ଅନ୍ତର ଥିବା ଭଳି ରାଗୀ (ଭୋଗୀ ଅର୍ଥରେ) ଏବଂ ବୈରାଗୀ ପୁରୁଷଙ୍କଠାରେ ରାତି-ଦିନର ଅନ୍ତର ଥାଏ । ବୈରାଗ୍ୟବାନ୍ ପୁରୁଷ ହିଁ ବୈରାଗ୍ୟବାନ୍‌ର ସ୍ଥିତି କିଛି ଅଂଶରେ ଅନୁମାନ କରିପାରିବ । ଯେଉଁ ପଦାର୍ଥ ରାଗୀ ପୁରୁଷକୁ ପ୍ରିୟ ହୋଇଥାଏ, ତାହା ବୈରାଗ୍ୟବାନ୍‌କୁ ଓଲଟା ପ୍ରତୀତ ହୋଇଥାଏ । ମାନ-ବଢ଼ିବା ରାଗୀ ପୁରୁଷକୁ ଅମୃତ ପରି ଲାଗିଥାଏ; କିନ୍ତୁ ବୈରାଗ୍ୟବାନ୍‌କୁ ବିଷତୁଲ୍ୟ ପ୍ରତୀତ ହୋଇଥାଏ । ରାଗୀକୁ ଅତର, ସୁଗନ୍ଧିତ ତେଲ, ପାଉଡର ଆଦି ସୁଗନ୍ଧିତ ଦ୍ରବ୍ୟ ଭଲ ଲାଗିଥାଏ; କିନ୍ତୁ ବୈରାଗ୍ୟବାନ୍ ଏଗୁଡ଼ିକୁ ଘୃଣା ଦୃଷ୍ଟିରେ ଦେଖିଥାଏ । ଦୁହିଁଙ୍କ ରୁଚି ବିପରୀତ ହୋଇଥାଏ । କୋମଳ ଶଯ୍ୟା ରାଗୀକୁ ଆରାମ ଦେଇଥାଏ; କିନ୍ତୁ ବୈରାଗ୍ୟବାନ୍‌କୁ ତାହା ଭଲ ଲାଗେ ନାହିଁ । ଯେଉଁଠି ମନ ଲାଗିଗଲା, ସେଇଠି ପଡ଼ିରହିଲେ, ଭୂମି ହେଉ ବା ଚଟେଇ, ତା'ପାଇଁ ସବୁ ସମାନ – ବୈରାଗ୍ୟବାନ୍‌ର ବୃତ୍ତି ସଂସାରରୁ ଦୂରେଇ ରହିଥାଏ । × × ×"

ତାକୁ ସଂସାରୀ କରିବାପାଇଁ ବହୁ ଯତ୍ନ କରିଛି । କେବଳ ବହିପତ୍ର, ଲେଖାପଢ଼ା ବ୍ୟତୀତ ଆଉ କେଉଁଥିରେ ସେ ଖୁସୀ ହୁଏନି । ଯେତେ ଯାହା ତା'ପାଇଁ କରିଥିଲି, ତାକୁ ଦେଇଥିଲି, ତା'ରି ପାଇଁ ସାଇତି ରଖିଥିଲି – ସେସବୁକୁ ଫୋପାଡ଼ି ଦେଇ ମୋର ସେଇ ବୈରାଗୀ ପିଲାଟା ଆଜି କୁଆଡ଼େ ଚାଲିଗଲା !!

ଗାଆଁରେ ମୋର ଯାହା ଘରଦ୍ୱାର ଥିଲା, ମହାବାତ୍ୟାରେ ଭାଙ୍ଗି ଚୁର୍‌ମାର୍ ହୋଇଗଲା । ନୂଆ ଘର କଲାବେଳେ ସେ ଦେଖି ବେଳେ ବେଳେ ଖୁସୀ ହୁଏ, ଆଉ ବେଳେ ବେଳେ ତା' ମାଆକୁ କୁହେ – "ନନା କାହିଁକି ଏତେସବୁ

କରୁଛନ୍ତି ? କିଏ ଏଠି ରହିବ ?" ମୋତେ ବି ଏଇ କିଛି ବର୍ଷ ହେଲା କହୁଥିଲା – "ଛୋଟ କରି ଘର କର, ବେଶି ଲମ୍ବାଅନି ।" ମୋର କକେଇ ପୁଅ ଭାଇ ମଙ୍ଗଳ ଦିଲ୍ଲୀରେ ରୁହେ । ସେ ଗତବର୍ଷ ଭୁବନେଶ୍ୱର ଆସିଥିବାବେଳେ ଉଭୟଙ୍କର କଥାବାର୍ତ୍ତା ଭିତରେ ସେ ତାକୁ (ମଙ୍ଗଳକୁ) କହିଥିଲା – "ନନା ଗାଆଁରେ ଏତେ ଘରଦ୍ୱାର କାହିଁକି କରୁଛନ୍ତି ? କିଏ ରହିବ ? ହଉ, କରନ୍ତୁ, ତାଙ୍କୁ ଯଦି ଖୁସୀ ଲାଗୁଛି ।" (ଏଇ କଥା ତା' ମୃତ୍ୟୁ ପରେ ମଙ୍ଗଳଠାରୁ ଶୁଣିଲି ।)

ମୋ ଜୀବନରେ ମୋତେ ସେ ଯେତେ ସମ୍ମାନ ଦେଇଛି, ଏତେ ସମ୍ମାନ ଶ୍ରଦ୍ଧା, ଭଲପାଇବା, ଆଉ କେଉଁଠୁ ପାଇନି କି ପାଇବିନି । ମୋର ଭାଇ, ପୁତୁରା, ଝିଅ, ଭଉଣୀ ଇତ୍ୟାଦି ମୋତେ ଶ୍ରଦ୍ଧା ସମ୍ମାନ ଦେଇଛନ୍ତି ଓ ଦେଉଛନ୍ତି । କିନ୍ତୁ ସେ ଥିଲା ଅନନ୍ୟ । ମୋତେ ସେ ଦେବତା ଜ୍ଞାନ କରେ । ମୋ ପାଟିରୁ କଥା ବାହାରିବା ମାତ୍ରେ ସେ କାର୍ଯ୍ୟକାରୀ କରିବାକୁ ବ୍ୟସ୍ତ ହୋଇପଡ଼େ । ମୋ ଜୀବନରେ ଯେ ମାନବୀୟ ଦୁର୍ବଳତା ନାହିଁ – ତା' ନୁହେଁ; କିନ୍ତୁ ତା' ପାଖରେ ପ୍ରବୃତ୍ତି ତାଡ଼ିତ ଦୁର୍ବଳତା ମୁଁ ଲକ୍ଷ୍ୟ କରିନି ।

ଥରେ କଥା ପ୍ରସଙ୍ଗରେ ମୋତେ କହିଥିଲା – "ନନା ! ଜୀବନରେ ଏମିତି କୌଣସି କାମ କରିବିନି, ଯେଉଁଥିରେ ତୁମ ଉପର ମୁହଁ ତଳକୁ ହେବ ।" ଏଇ କଥା କହିବାରେ ତା'ର ଥିଲା ଦୃଢ଼ ପ୍ରତ୍ୟୟ । ସେ ଯିବା ପରେ ମୋ ମୁଣ୍ଡ ଆପଣାଛାଏଁ ତଳକୁ ହୋଇଯାଇଛି । ପୁଣି, ତାରି କଥା ମନେପକାଇ ବହୁ କଷ୍ଟରେ ମୁଣ୍ଡ ଉପରକୁ ଟେକୁଛି । ସେ ତ ଜାଣିନି ଏମିତି ସେ ଯିବ ବୋଲି । କେତେ ଆଶା କରିଥିଲା, କେତେ ସ୍ୱପ୍ନ ଦେଖିଥିଲା – ତା' ନନା ଓ ବୋଉଙ୍କୁ ପରିଣତ ବୟସରେ ସୁଖରେ ରଖିବ ବୋଲି । ଏଇ ଦୁଇ ତିନି ବର୍ଷ ହେଲା ପ୍ରାୟ ମୋତେ କୁହେ – ଏତେ ଆଡ଼େ ବୁଲାବୁଲି ନ କରି ଠାକୁରଙ୍କ ବହିପତ୍ର ପଢ଼ାପଢ଼ି କର, ଆଉ ନୂଆ ନୂଆ ଲେଖାସବୁ ବାହାର କର । ତା' ସ୍ତ୍ରୀକୁ ଓ ତା' ବୋଉକୁ ବି କହିବ 'ପଢ଼ାପଢ଼ି କର' । ସେ ଜାଣିଥିଲା – 'ନାସ୍ତି ଜ୍ଞାନାତ୍ ପରଂ ସୁଖମ୍' ।"





ମୋ ଜୀବନର ସବୁଠାରୁ ବଳି ଚରମ ଦୁର୍ଦ୍ଦିନ ଆସି ପହଞ୍ଚିଲା । ୨୦୧୪ ମସିହା ଅଗଷ୍ଟ ୧୮ ତାରିଖ ସୋମବାର । ସେଦିନ ପହିଲା ଭାଦ୍ରବର ପ୍ରଥମ ସକାଳ ମନକୁ ଆଧ୍ୟାତ୍ମିକ ପରିବେଶରେ ଶାନ୍ତ କରିଦେଇଥାଏ । ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରରେ ଭାଦ୍ରବ ସତ୍‌ସଙ୍ଗ ପରିକ୍ରମାର ପ୍ରଥମ ସତ୍‌ସଙ୍ଗ ସକାଳ ୭ଟାରେ । ସେଇ ସତ୍‌ସଙ୍ଗ ସାରି ମଧ୍ୟାହ୍ନରେ ଜଗତ୍‌ସିଂହପୁର ସତ୍‌ସଙ୍ଗ ବିହାରରେ ସତ୍‌ସଙ୍ଗରେ ଯୋଗଦେବି । କାରଣ ମୋର ସମ୍ଧୀ (ରଦ୍ଧୀଶର ଶ୍ୱଶୁର) ସତ୍‌ସଙ୍ଗ ପ୍ରଦାନ କରୁଥାଆନ୍ତି ଏବଂ ମୋତେ ବହୁ ପୂର୍ବରୁ ନିମନ୍ତ୍ରଣ କରିଥାଆନ୍ତି । ସନ୍ଧ୍ୟାରେ ଭୁବନେଶ୍ୱର ସତ୍‌ସଙ୍ଗ ବିହାରରେ ସତ୍‌ସଙ୍ଗରେ ଯୋଗଦେବାପାଇଁ ଶ୍ରଦ୍ଧେୟ ଅଭୟଭାଇ ଆମନ୍ତ୍ରଣ କରିଥାଆନ୍ତି । ଭୋରୁ ନିତ୍ୟକର୍ମ ସବୁ ସାରିଦେଲି ଏବଂ ସତ୍‌ସଙ୍ଗକୁ ଯିବାକୁ ଲୁଗାପଟା ପିନ୍ଧିଲି । କାହିଁକି କେଜାଣି ମନହେଲା – ବାପୁ ପାଖକୁ ଟିକେ ଫୋନ୍ କରେ ! ଫୋନ୍ କରୁ କରୁ ସେପଟରୁ ଶୁଭିଲା – "ଆଜ୍ଞା !"

– କ'ଣ କରୁଛୁ ?

– ନାଇଁ ବାଥ୍‌ରୁମ୍‌କୁ ଯିବି ତ, ସେ (ତା' ସ୍ତ୍ରୀ) ବାଥ୍‌ରୁମ୍‌କୁ ଯାଇଛି, ଆସିଲେ ଯିବି । ଖଟ ଉପରେ ଗଡ଼ପଡ଼ ହେଉଛି ।

ସେଇ ସମୟରେ ତା' ସ୍ତ୍ରୀ (ସ୍ମୃତି) ବାଥ୍‌ରୁମ୍‌ରୁ ବାହାରେ ଏବଂ ସେ ସ୍ମୃତିକୁ କୁହେ – "ନେ, ନନା ଫୋନ୍ କରିଛନ୍ତି, କଥା ହ' ।"

ମୁଁ ଅଳ୍ପ କେତୋଟି କଥା, ଖାଇବା-ପିଇବା, କ'ଣ ଜଳଖିଆ କରିବୁ, କେତେବେଳେ କ୍ଲାସ୍‌କୁ ଯିବୁ, ଇତ୍ୟାଦି କଥା ହୁଏ । ତା' ପରେ ପରେ ସତ୍‌ସଙ୍ଗକୁ ବାହାରିଯାଏ । ସତ୍‌ସଙ୍ଗ ମଝିରେ ଥରେ ଫୋନ୍ ବାଜିଉଠେ; ଦିଲ୍ଲୀରୁ ମୋ ଝିଅ ଫୋନ୍ କରିଥିଲା । କାଟିଦେଲି । ସତ୍‌ସଙ୍ଗ ପରେ ପରେ ଫୋନ୍ କଲ୍ ଆସିବାକୁ ଲାଗେ । ମୋ ବଡ଼ଶଳାଙ୍କ ପୁଅ ରବିଠାରୁ ଖବର ପାଏ ଯେ, ରଦ୍ଧୀଶ ହସ୍‌ପିଟାଲ୍‌ରେ । ପରେ ପରେ ମୋ ବୋହୂ, ମୋ ବଡ଼ଭାଇଙ୍କ ଜଣାନ୍ତି ଶୀଘ୍ର ଯିବାକୁ । ମୁଁ ଫୋନ୍ କରି ବଡ଼ଭାଇଙ୍କ କିଶୋରବାବୁଙ୍କଠାରୁ

ଜାଣିନିଏ ସଠିକ୍ ଖବର – ରଶ୍ମୀଶ ଆଉ ନାହିଁ । ମୋତେ ହଠାତ୍ ଜଣାପଡ଼େ – ସତେ ଯେପରି ପାହାଡ଼ ମୋ ଉପରେ ଭାଙ୍ଗିପଡ଼ିଲା । ଗୋଡ଼ତଳୁ ମାଟିସବୁ ଅପସରି ଗଲା ! କ'ଣ କରିବି ? କେତୋଟି ମିନିଟ୍ ମଧ୍ୟରେ ମୋ ଆଖି ସାମନାରେ ଭାସିଉଠିଲା – କର୍ତ୍ତବ୍ୟ । ମୋ ସାନଭାଇ ଦୁଇଜଣଙ୍କୁ ଓ ମୋ ସ୍ତ୍ରୀକୁ ଅତି ସଂକ୍ଷେପରେ ଖବରଟି କହି, ଠାକୁରଙ୍କୁ ପ୍ରଣାମ କରି ଗାଡ଼ି ରିଜର୍ଭ କରି ଭୁବନେଶ୍ୱର ଚାଲିଗଲି । ଭୁବନେଶ୍ୱର କ୍ୟାପିଟାଲ୍ ହସ୍‌ପିଟାଲରେ ପହଞ୍ଚି ଦେଖିଲି – ବନ୍ଧୁବାନ୍ଧବ, ଶୁଭେଚ୍ଛୁ, ତା'ର ସହକର୍ମୀବୃନ୍ଦ, ଅନେକ ଗୁରୁଭାଇଙ୍କ ଭିଡ଼ । କେମିତି ସେମାନେ ଏତେ ଶୀଘ୍ର ଖବର ପାଇଲେ ? କିଏ ସେମାନଙ୍କୁ ଏତେ ଶୀଘ୍ର ଖବର ଦେଲେ !! ସମସ୍ତେ ମୋତେ ଚାହୁଁଥା'ନ୍ତି । ଭାବୁଥା'ନ୍ତି ବୋଧହୁଏ, ଏତେ ବଡ଼ ବିପଦ ଧକ୍କା ମୁଁ କେମିତି ସହ୍ୟ କରିପାରୁଛି ? ସଂସାରରେ ବେଳେ ବେଳେ ଏମିତି ଘଟଣାମାନ ଘଟେ । ମୋ ଜୀବନରେ ଏପରି ଘଟିବ – ମୁଁ କେବେବି କଳ୍ପନାକୁ ଆଣି ନ ଥିଲି । ଦୁଃଖ ଅତି ତୀବ୍ର ହେଲେ ତାହାର ପ୍ରତିକ୍ରିୟା ଲୁହ ବା ଭାଷାର ଅତୀତ ହୋଇଯାଏ । ରକ୍ତ-ମାଂସ ଶରୀର ପଥର ପାଲଟି ଯାଏ । ବୋଧହୁଏ ମୋର ସେୟା ହେଲା କି କ'ଣ ! କବିବରଙ୍କ ଭାଷାରେ –

"ନ ହେଲା ନୟନୁ ଅଶ୍ରୁ ବିଗଳିତ,
ଏ ଯାତନା ସିନା ଅଶ୍ରୁର ଅତୀତ ।"

ସିଧାସଳଖ ଆଗେ ମୋ ବୋହୂ ପାଖକୁ ଗଲି । କ'ଣ କହିବି ତାକୁ ? ମୋ କୋଡ଼ରେ ମୁହଁ ଲୁଚାଇ କାନ୍ଦିଲା । ତା' ପାଖରେ ବେଶି ସମୟ ରହିଲେ ମୋର ଧୈର୍ଯ୍ୟଚ୍ୟୁତି ଘଟିବ । ଏଣୁ ଅନ୍ୟମାନଙ୍କୁ ବିଶେଷତଃ ମୋ ଭାଇବୋହୂ ତଥା ତା' ଖୁଡ଼ୀଶାଶୁଙ୍କୁ ତା' ପାଖରେ ରଖି ପୋଷ୍ଟମର୍ଟମ୍ ରୁମ୍ ଆଡ଼କୁ ଚାଲିଲି । କେତେ ଚିହ୍ନା ଅଚିହ୍ନା ଲୋକଙ୍କୁ ଦେଖିଲି । ସମସ୍ତେ ଖବର ପାଇ ଛୁଟି ଆସିଛନ୍ତି । କାହାରି ମୁହଁରୁ ଭାଷା ନାହିଁ । ଅପ୍ରତ୍ୟାଶିତ ଚଡ଼କ ଯେପରି ସମସ୍ତଙ୍କ ମୁଣ୍ଡ ଉପରେ ପଡ଼ିଯାଇଛି ! ପ୍ରସ୍ତର ମୂର୍ତ୍ତି ଭଳି ସମସ୍ତଙ୍କୁ ଚାହିଁଲି । ସେତେବେଳେ କାହାକୁ ଚିହ୍ନିପାରିଲି ବା କାହାକୁ ଚିହ୍ନିପାରିଲିନି । ସତରେ ଏସବୁ ଲୋକ ମୋ

  

ପିଲାଟାକୁ ଏତେ ଭଲ ପାଆନ୍ତି !! ଆଜି ମୁଁ ସେମାନଙ୍କ ପାଖରେ କୃତଜ୍ଞ । ଦେଖିଲି – ମୋ କକେଇ (ଡା. ଲୋକନାଥ ଆଚାର୍ଯ୍ୟ, Ex-Director, Health, Govt. of Odisha & Ex-CMO, Capital Hospital) ଆସି ସପରିବାର ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ମୋତେ ଦେଖି କଇଁ କଇଁ ହୋଇ କାନ୍ଦିପକାଇଲେ । ଚାଲିପାରୁ ନ ଥା'ନ୍ତି, ଉଠିପାରୁ ନ ଥା'ନ୍ତି – ତଥାପି ଆସିଥା'ନ୍ତି । ମୁଁ କହିଲି – "ଏ ଅବସ୍ଥାରେ କାହିଁକି ଆସୁଥିଲ ? ନିଜେ ତ ଚଲାବୁଲା କରିପାରୁନ !" ଶୁଣି କହିଲେ – "ତୁ କଅଣ କହୁଛୁ ? ତୁ ଏଡ଼େ ନିଷ୍ଠୁର ! କେମିତି ଏକଥା କହିପାରୁଛୁ ?" ସତରେ ମୁଁ ନିଷ୍ପ୍ରାଣ ହୋଇଯାଇଥିଲି । ମୋ ଆଗରେ ଖାଲି ଥିଲା – ନିର୍ମମ କର୍ତ୍ତବ୍ୟର ବୋଝ । କ'ଣ କରିବି ? – ଏଇ ଭାବନା । ପୋଷ୍ଟମର୍ଟମ୍ ପରେ ଶବକୁ ଆମ୍ବୁଲାନ୍ସରେ ଗାଆଁକୁ ନେବାର ଦାୟିତ୍ୱ ମୋର ସାନଭାଇ ନୀରଦ (ବାଆଜୀ) ଓ ଅନୁଜପ୍ରତିମ ରଜତକୁ ନ୍ୟସ୍ତ କରି ମୋ ବୋହୂ ପାଖକୁ ଆସିଲି । ଚୁପ୍‌ଚାପ୍ ପାଷାଣ ପରି ବସିଥାଏ । ମୁଁ ତାକୁ କହିଲି – "ମାଆ ! ଚାଲ ଘରକୁ ଯିବା ।" ଏତିକରେ ମୋ ହାତଧରି ଉଠିଆସିଲା । ତା'ର ବାପା, ବୋଉ, ଭାଇ, ମଉସା, ମାଉସୀ ପ୍ରଭୃତି କାନ୍ଦି କାନ୍ଦି ତା' ପଛରେ ଗୋଡ଼ାଉଥା'ନ୍ତି । କାହାକୁ ନ ଚାହିଁ, କାହା କଥା ଶୁଣିଲା କି ନ ଶୁଣିଲା କେଜାଣି, ମୋ ସାଙ୍ଗରେ ମୋ ଗାଡ଼ିରେ ମୋ ଗାଆଁ ଲଥାଙ୍ଗରେ ପହଞ୍ଚିଲାବେଳକୁ ଅପରାହ୍ନ । ଗାଆଁ ଦାଣ୍ଡରେ ଶହ ଶହ ଲୋକ । ଆଜିବି ବେଳେ ବେଳେ ଭାବେ, ଦୁନିଆରେ କେତେ ଲୋକ ଚାଲିଯାଉଛନ୍ତି; ସେମିତି ମୋ ପୁଅଟା ଚାଲିଗଲା, ପିଲାଟାପାଇଁ ଏତେ ଲୋକଙ୍କ କାନ୍ଦ କାହିଁକି ? ପାଷାଣ ପରି ସମସ୍ତଙ୍କୁ ଚାହିଁଲି । ନିର୍ମମ ହୋଇ ପୁଅର ମରଶରୀରରେ ଫୁଲହାର, ନୂଆଲୁଗା ଦେଲି । ଶ୍ମଶାନକୁ ଗଲି ଓ ତା' ଶବ ସଂସ୍କାରର ସବୁ ବ୍ୟବସ୍ଥା ମୋତେ ହିଁ କରିବାକୁ ହେଲା । ଭାବିଲି ଏଇ ପରମ କର୍ତ୍ତବ୍ୟ ଆଗେ ହିଁ କରିବାକୁ ହେବ । ଏଇ ଗ୍ରାମ ଶ୍ମଶାନରେ ମୋ ପିତାଙ୍କର ଶବ ସଂସ୍କାର କରିଥିଲି, ଆଜି ପୁତ୍ରର କଲି । ଏହାଠାରୁ ବଳି ଦୁର୍ଭାଗ୍ୟ ଆଉ କ'ଣ ଅଛି ? ସନ୍ଧ୍ୟାସୁଦ୍ଧା ସବୁ ଶେଷ । ପଞ୍ଚଭୂତର ଶରୀର ପଞ୍ଚଭୂତରେ ବିଲୀନ ହେଲା ।

  

ରାତି ଘନେଇଲା । ରାତିର ନିର୍ଜନ ପ୍ରହରରେ ଯେଉଁଠି ଆଣି ତା' ଶବକୁ ଶୁଆଇଥିଲି, ସେଇଠି ଯାଇ ବସିଲି । ଆଖିରୁ ଅବାରିତ ଅଶ୍ରୁଧାରା ଗଡ଼ିବାକୁ ଲାଗିଲା । ଭାବୁଥାଏ – କ'ଣ ହୋଇଗଲା ମୋ ଜୀବନରେ ? ଏଇ କ'ଣ ବିଶ୍ୱପିତାଙ୍କ ଇଚ୍ଛା ? ଏମିତି କ'ଣ ହେବା କଥା ? ପାଟିରୁ ଅଜାଣତରେ ବାହାରିପଡ଼ିଲା – "ବାପାରେ ! ମୋତେ ଛାଡ଼ିଦେଇ କୁଆଡ଼େ ତୁ ଚାଲିଗଲୁ ?" କାନ୍ଦରେ ଭାଙ୍ଗିପଡ଼ିଲି । ମୁଣ୍ଡ, ଦେହ କ'ଣ ଯେପରି ହୋଇଗଲା । ଭାବିଲି – ବୋଧହୁଏ ପ୍ରାଣ ମୋର ଛାଡ଼ିଯିବ ! କିନ୍ତୁ ପ୍ରାଣ ଛାଡ଼ିଲାନି । କାରଣ, ପରିଣତ ବୟସରେ ପୁତ୍ରଶୋକରେ ମୋର କାନ୍ଦିବାର ଅଛି – ଏହାହିଁ କର୍ମଫଳ – ବିଧାତାଙ୍କ ବିଧାନ । ମୋର ଅବସ୍ଥା ଦେଖି ମୋ ଝିଅ ଇତିନା, ସାନଭାଇ, ଭାଇବୋହୂ, ପୁତୁରାମାନେ ମୋତେ ଜଗିକରି ଶୋଇଲେ । ବିନିଦ୍ର ରଜନୀ କେତେବେଳେ ପାହିଗଲା । ସକାଳ ହେଲା । ଆଖି ସାମନାରେ ଭାସିଉଠିଲା – କର୍ତ୍ତବ୍ୟ । ସେ ମୋପାଇଁ କରିଥାଆନ୍ତା, ମୁଁ ତା'ପାଇଁ କରିବି । ଶୁଦ୍ଧି-କ୍ରିୟା ଇତ୍ୟାଦି କିପରି ଠିକ୍ ଭାବେ କରିବାକୁ ହେବ – ତାହାର ବ୍ୟବସ୍ଥା କରିବାକୁ ଲାଗିଲି । ସାନ୍ତ୍ୱନା ଦେବାକୁ ତଥା ସମବେଦନା ଜଣାଇବାକୁ ବହୁ ବନ୍ଧୁ, ଶୁଭେଚ୍ଛୁ, ଆତ୍ମୀୟସ୍ୱଜନ, ଗୁରୁଭାଇବୃନ୍ଦ ଆସିବାକୁ ଲାଗିଲେ । ମୋ ବୋହୂ ସେତେବେଳ ସମୟରେ ପଦେ କହିଥିଲା – "ନନା ! ସାନ୍ତ୍ୱନା ଆମର କ'ଣ ହେବ ? ସେ କ'ଣ ଆଉ ଫେରିବେ ?" ସତକଥା ହେଲେବି ସେମାନେ ସେମାନଙ୍କର କର୍ତ୍ତବ୍ୟ ଓ ମଣିଷପଣିଆ ପ୍ରକାଶ କରିବା କଥା ଏବଂ ତାହା ସେମାନେ କରିଛନ୍ତି । ଆଜି ମଧ୍ୟ ମୁଁ ସେମାନଙ୍କ ନିକଟରେ କୃତଜ୍ଞ, ଯେଉଁମାନେ ମୋର ଚରମ ଦୁର୍ଦ୍ଦିନରେ ଅନ୍ତତଃ ମୋ ପାଖରେ ଠିଆହୋଇଛନ୍ତି ।

ତା'ର ଦ୍ୱାଦଶାହ ଦିନ ମୋର କକେଇ (ଡା. ଲୋକନାଥ ଆଚାର୍ଯ୍ୟ) ଯେ କି ଓଡ଼ିଶାର ଜଣେ ଜଣାଶୁଣା ଡାକ୍ତର, ସପରିବାର ଭୁବନେଶ୍ୱରରୁ ଆସି ଗାଆଁରେ ପହଞ୍ଚିଲେ । ଦୀର୍ଘ ସମୟ ଧରି ରଦ୍ଧୀଶ ବିଷୟରେ କଥା ହେଲେ । ପାଖରେ ଆମ ଗାଁ ସୁରବାବୁ ପ୍ରଭୃତି କେତେ ଜଣ ଥାଆନ୍ତି । ରଦ୍ଧୀଶ ମୋ କକେଇଙ୍କ ସହ ଅଜା-ନାତି ହିସାବରେ ଗେଲ-ତାମସା ହୁଏ ଏବଂ ଗୁରୁତ୍ୱପୂର୍ଣ୍ଣ





ପ୍ରସଙ୍ଗ ମଧ୍ୟ ଆଲୋଚନା କରେ । ଅନେକ ସମୟରେ ତାଙ୍କ ପାଖକୁ ଯାଏ । ପୁରୀରେ ସେ ସି.ଡି.ଏମ୍.ଓ. ଥିବାବେଳେ ରଦ୍ଧୀଶ ତାଙ୍କ କ୍ୱାର୍ଟର୍ସରେ ରହୁଥିଲା । ଏଣୁ ଅତି ନିବିଡ଼ ସମ୍ପର୍କ ହେବା ସ୍ୱାଭାବିକ । କକେଇ କହୁଥିଲେ – "ତା' ପାଖରେ (ରଦ୍ଧୀଶ) ଏତେ up-to-date information ଥାଏ, ବେଳେବେଳେ ମୁଁ ବିସ୍ମିତ ହୁଏ । ବହୁ ତଥ୍ୟ ତା' ପାଖରୁ ମିଳେ । ମୁଁ ଯା' ଭିତରେ ବହୁ ଭାବିଛି – କ'ଣ ପାଇଁ ତା'ର ହଠାତ୍ ହୃଦ୍‌ଘାତ ହେଲା ! ଯେତେ ତର୍ଜମା କରୁଛି, କୌଣସି ସିଦ୍ଧାନ୍ତରେ ପହଞ୍ଚିପାରୁନି ।" ମୋତେ ଚାହିଁ କହିଲେ – "ବୁଝିଲୁ, ଏମିତିକା ପିଲା ବହୁଦିନ ରୁହନ୍ତିନି ।" ମୋ କକେଇ ତାକୁ ବହୁତ ଭଲ ପାଆନ୍ତି । ଏଇ କିଛି ବର୍ଷ ହେଲା ରଦ୍ଧୀଶ ତାଙ୍କ ସହିତ ବହୁ ଭାବରେ ମିଶିଛି । ମୁଁ କକେଇଙ୍କୁ କହୁଥିଲି, ସ୍ମରଣିକାପାଇଁ ଲେଖା ଦେବାକୁ । ମାତ୍ର ଦୁର୍ଭାଗ୍ୟର ବିଷୟ ଯେ, ସେ ଏହା ଭିତରେ ପରଲୋକ ଗମନ କରିଛନ୍ତି ।

ଆଜି ଅଜସ୍ର ସ୍ମୃତି ମୋ ମାନସପଟରେ ଭିଡ଼ କରୁଛି । କ'ଣ ଲେଖିବି, କ'ଣ ବା ଲେଖିବିନି – ସ୍ଥିର କରିବା ମୁସ୍କିଲ୍ । ତା'ର ରୂପ, ତା'ର ଗୁଣ, ଚବିଶ ଘଣ୍ଟା ମୋ ଆଖି ଆଗରେ ନାଚୁଛି । ଯେତେ ଚେଷ୍ଟା କଲେ ମଧ୍ୟ ଦୂରେଇ ହେଉନି । କବିବରଙ୍କ ଭାଷାରେ –

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର,
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର ।"

ସେହିପରି 'ପାରିଲେ ପିଙ୍ଗି ମୁଁ ଲଭନ୍ତି ନିସ୍ତାର'; କିନ୍ତୁ ଫିଙ୍ଗିପାରିବିନି କି ନିସ୍ତାର ପାଇବିନି । ଏହାହିଁ ବୋଧେ ଠାକୁରଙ୍କ ଇଛା । କେଉଁ ଜନ୍ମରେ କାହାକୁ ପରିଣତ ବୟସରେ ବୋଧହୁଏ ପୁତ୍ରଶୋକ ଦେଇଥିଲି, ଯାହାକି ଆଜି ମୋତେ ଭୋଗ କରିବାକୁ ହେଉଛି, ଅଥବା ଅନ୍ୟ କିଛି କାରଣ ଅଛି, ଯାହା ଆମ ଜ୍ଞାନବୁଦ୍ଧିର ଧରାଛୁଆଁ ବାହାରେ ।

ଶାସ୍ତ୍ରରେ ଅଛି – "ଆତ୍ମନଃ ଜାୟତେ ପୁତ୍ରଃ" । ମଣିଷର ଆତ୍ମା ତା'ର ପୁତ୍ର ରୂପେ ଜନ୍ମଗ୍ରହଣ କରେ, ଯଦି ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ସମତାନତା

ଥାଏ । ଶରୀରରୁ ଆତ୍ମା ଚାଲିଗଲେ ଶରୀର ହୁଏ ନିଷ୍ପ୍ରାଣ । ପୁତ୍ର ଚାଲିଗଲା, ଅର୍ଥାତ୍ ଆତ୍ମା ଚାଲିଗଲା । ମୁଁ ତା'ହେଲେ ବଞ୍ଚିଛି କିପରି ? କବିଙ୍କ ଭାଷାରେ –

"× × ×

ମାଟିର ଦେହରୁ ପ୍ରାଣ ଚାଲିଗଲେ
ସିଏ ତ ମରଣ ନୁହେଁ,
ଏ ମଣିଷ ମରେ ଜୀବନରୁ ଯେବେ
ନୂତନତା ଚାଲିଯାଏ ।

ବାକି ରହିଯାଏ ଜୀବନର ବୋଝ
ଯାହା ଅଛି ଦୂରୁବହ,
× × ×
ମରି ସାରିଛି ମୁଁ ଏବେ ବି କରୁଛି
ବଞ୍ଚିବାର ଅଭିନୟ ।"

ଯେଉଁ ବିରାଟ ଛତ୍ରଛାୟା ତଳେ ଦୀର୍ଘ ୪୫ ବର୍ଷ ଧରି ବଞ୍ଚିଛି – ସେଇ ଠାକୁରଙ୍କ ଆଶ୍ରମ ଦେଓଘର ଗଲି ତା' ମୃତ୍ୟୁର ଅଢ଼େଇମାସ ପରେ ମନକୁ ଦୃଢ଼ କରି । ପୂଜନୀୟ ବାବାଇଦାଙ୍କ ନିକଟରେ ସବୁ ନିବେଦନ କଲି ଏବଂ ତାଙ୍କ ନିର୍ଦ୍ଦେଶରେ ରଦ୍ଧୀଶର ପାଞ୍ଜାକୁ ଋତ୍ୱିକ୍-କାର୍ଯ୍ୟାଳୟରେ ଜମା ଦେଲି ।

ନିଜକୁ ବୁଝାଇବାପାଇଁ ଏଇ ଏଗାର ମାସ ହେଲା ବହୁ ଚେଷ୍ଟା କରୁଛି, ଇଷ୍ଟକର୍ମରେ ବୁଡ଼ି ରହିବାକୁ ଚେଷ୍ଟା କରୁଛି; କିନ୍ତୁ ଯୁଆଡ଼େ ଗଲେ, ଯାହା କରିଲେ – କେବଳ ତା'ରି ରୂପ, ତା'ରି କଥା, ତା'ରି ଗୁଣ । ଗୋଟିଏ ସ୍ଥାନରେ ପଢ଼ିଥିଲି – 'ମୃତ୍ୟୁ ଏକ ଭ୍ରମ । ଆତ୍ମା ଆତ୍ମା ଭିତରେ ସାମୟିକ ବିଚ୍ଛେଦ । ଯେପରି ଦୁଇଜଣ ବାଟୋଇ ସାଙ୍ଗହୋଇ ଚାଲିଥା'ନ୍ତି, କିଛି ବାଟ ପରେ ବାଟଭାଙ୍ଗି ଯେଝା ରାସ୍ତାରେ ଯେଝା ଯାଆନ୍ତି ।'

ଗତ ମାର୍ଚ୍ଚ ୨୨ ତାରିଖ (୨୦୧୫)ରେ ଗୋଟିଏ ସତ୍‌ସଙ୍ଗ ଉତ୍ସବରେ ବକ୍ତା ହିସାବରେ ଯୋଗଦେବାକୁ ଯାଇଥିଲି । ଅଧ୍ୟକ୍ଷ କହିଲେ – ଆପଣ ଘଣ୍ଟାଏ

ପାଖାପାଖି କୁହନ୍ତି । ଭଜନ-କୀର୍ତ୍ତନ ପରେ ସ୍ଥାନୀୟ ଋତ୍ୱିକ୍ ପ୍ରାରମ୍ଭିକ ସୂଚନା ଦେଲେ । ହଠାତ୍ କାହିଁକି କେଜାଣି ତା'ରି କଥା ମନେପଡ଼ିଗଲା । ଥରେ ଡିଗ୍ରୀ କ୍ଲାସ୍‌ରେ ପଢ଼ିବାବେଳେ କହୁଥିଲା – "ନନା ! ତୁମେ ଯେତେବେଳେ ଭାଷଣ ଦିଅ, ମୋତେ ଶୁଣିବାକୁ ଭାରି ଭଲ ଲାଗେ । ତୁମ କଥାସବୁ ଜ୍ଞାନଗର୍ଭକ ଓ ସରଳ । ଶୁଣାକଥା ନୁହେଁ, ଅନୁଭୂତିର ଅନ୍ତସ୍ଥ ଭାବ ।" ଏଇ ଭାବନା ଭିତରେ ମୁଣ୍ଡ ତଳକୁ ହୋଇଗଲା, ଆଖିରେ ଲୁହ ଭର୍ତ୍ତି ହୋଇଗଲା । କ'ଣ କରିବି ? ଏବେ ତ ମୋତେ କହିବାକୁ ହେବ ! ସମସ୍ତଙ୍କ ଅଲକ୍ଷ୍ୟରେ ଆଖିର ଚଷମା ଖୋଲି ଲୁହ ପୋଛିଲି । ଠାକୁରଙ୍କ ବିଗ୍ରହ ଆଡ଼କୁ ଚାହିଁଲି । ତା' ପରେ କହିବାରେ କିଛି ଅସୁବିଧା ହୋଇନି – ଦୀର୍ଘ ପଚାଶ ମିନିଟ ବକ୍ତବ୍ୟ ରଖିଲି ।

'ମନୁସ୍ମୃତି'ରେ ଅଛି –

"ଆୟୁଃ କର୍ମଞ୍ଚ ବିତ୍ତଂ ଚ ବିଦ୍ୟାନିଧନମେବ ଚ ।
ପଞ୍ଚୈତାନ୍ୟପି ସୃଜ୍ୟନ୍ତେ ଗର୍ଭସ୍ଥସୈବ ଦେହିନଃ ॥"

ଅର୍ଥାତ୍, ଆୟୁ, କର୍ମ, ବିତ୍ତ, ବିଦ୍ୟା, ନିଧନ – ଏହି ପାଞ୍ଚଟି ବ୍ରହ୍ମା ଜୀବ ଗର୍ଭାବସ୍ଥାରେ ଥିବାବେଳେ ସର୍ଜନା କରିଥା'ନ୍ତି । ଋଦ୍ଧୀଶର ବୋଧେ ଆୟୁଷ କମ୍ ଥିଲା । ଯାହାକି ଆମ ଜ୍ଞାନ-ବୁଦ୍ଧିର ବାହାରେ । ଅଥବା, କର୍ମ ତା'ର ଶେଷ ହୋଇଗଲା, ଅଧିକ ଦିନ ରହି ଆଉ କର୍ମଫଳ ସୃଷ୍ଟି କରୁ – ଏହା ପରମପିତା ଚାହିଲେନି । ପବିତ୍ର 'ଯାଜକ-ପାଞ୍ଜା' ଆଚାର୍ଯ୍ୟଦେବଙ୍କ ଶ୍ରୀହସ୍ତରୁ ଗ୍ରହଣ କରିବା ପରେ କେତେ ଥର ମୋତେ କହିଛି – "ନନା ! ମୁଁ ପାଞ୍ଜା ଆଣିବାବେଳେ ଶ୍ରୀଶ୍ରୀଦାଦା ମୋତେ କେତେ ସମୟ ଧରି ଚାହିଁଲେ । ଅନ୍ୟମାନଙ୍କୁ ପାଞ୍ଜା ଦେଉଥା'ନ୍ତି, ପୁଣି ବୁଲି କରି ମୋ ଆଡ଼କୁ ବାରମ୍ବାର ଚାହୁଁଥା'ନ୍ତି ।" ଶ୍ରୀଶ୍ରୀଦାଦାଙ୍କର ଏହି ଶୁଭଦୃଷ୍ଟି କଥା ଶୁଣି ମୁଁ ବହୁତ ସନ୍ତୁଷ୍ଟ ଥିଲି; କିନ୍ତୁ ତାଙ୍କ ଦିବ୍ୟଦୃଷ୍ଟିରେ ଧରାପଡ଼ିଥିଲା – କେତେ ଦିନପାଇଁ ୟେ' ପାଞ୍ଜା ନେଉଛି !! ତା' ବିବାହ ପରେ ପୁଅ-ବୋହୂଙ୍କୁ ନେଇ ଦର୍ଶନ କରାଇବାବେଳେ ସେଇ ଏକା କଥା । ପରେ ମୋତେ କହୁଥିଲା – "ନନା ! ତୁମେ ଯେତେବେଳେ ଆମକୁ ନେଇ ଦାଦାଙ୍କ ପାଖରେ ସବୁକଥା କହୁଥାଅ – ଦାଦା ତୁମକୁ ଚାହିଁଥା'ନ୍ତି,

ତୁମେ ଯୁଆଡ଼େ ଯାଉଥାଅ, ଦାଦା ଆଖି ବୁଲେଇ ତୁମକୁ ଚାହୁଁଥା'ନ୍ତି ।" ତାଙ୍କ ଦିବ୍ୟ-ଦୃଷ୍ଟିରେ ଧରାପଡ଼ିଥିଲା – ଯା'ର ଏ ଖୁସୀ କେତେ ଦିନପାଇଁ ? ରବୀଶର ମୃତ୍ୟୁ ପରେ ଦିନେ ମୋ ବୋହୂ (ତା' ସ୍ତ୍ରୀ) ମୋତେ କହୁଥିଲା – "ନନା ! ଯେଉଁଦିନ ଶ୍ରୀଶ୍ରୀଦାଦାଙ୍କ ପାଖକୁ ପ୍ରଥମେ ମୋତେ ନେଲେ – ଦାଦା ମୋତେ କେତେ ସମୟ ଧରି ଚାହିଁ ରହିଲେ ।" ଏହିସବୁ କଥାରୁ ଆଜି ସ୍ପଷ୍ଟ ଯେ, ସେ ସବୁ ଜାଣନ୍ତି ଓ ଜାଣିଛନ୍ତି ।

ଆମର ସବୁ ଆଶା, ଭରସା ଶକ୍ତ ଧକ୍କାରେ ଭାଙ୍ଗିଗଲା । ମଣିଷ ଆଶା ଯାହା କରେ, ସବୁବେଳେ କ'ଣ ତାହା ଫଳବତୀ ହୁଏ ? ଈଶ୍ୱରଙ୍କ ଇଚ୍ଛାହିଁ ଏ ଦୁନିଆରେ କାର୍ଯ୍ୟକାରୀ ହୋଇଥାଏ । ସେଥିପାଇଁ କୁହାଯାଏ – ତାଙ୍କ ବିନା ଇଚ୍ଛାରେ ଗଛରୁ ପତ୍ରଟିଏ ମଧ୍ୟ ଝଡ଼େନି । ମୋ ଡାଏରୀରେ ସେ ଗୋଟିଏ ବାଣୀ ଲେଖିଦେଇଯାଇଛି । ସତେ ଯେପରି ବାଣୀଟି ଆମପାଇଁ ଲେଖିଦେଇଯାଇଛି । ବାଣୀଟି ହେଉଛି –

"The plans of God
are very wonderful–
beyond your
highest hopes
you just to wait
for the right movement
wait is the word
My dearest word."

ମନ ହେଲେ ବେଳେ ବେଳେ ବାଣୀଟିକୁ ପଢୁଛି ଏବଂ ଭାବୁଛି – 'Plan of God' କ'ଣ ?

ଲେଖିଲେ ତ ଆଉ ବହୁତ କଥା ଲେଖିବାକୁ ଅଛି । କିନ୍ତୁ ସଂକ୍ଷେପରେ ଶେଷ କରିବାକୁ ହେବ । ଗତ ଏପ୍ରିଲ୍ (୨୦୧୫) ଉତ୍ସବରେ ଦେଓଘର ଯାଇଥିଲି । ମୋତେ ଦେଖି ଶ୍ରୀଶ୍ରୀଦାଦାଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇଗଲା । ମୋର ସଦ୍ୟ ପ୍ରକାଶିତ 'ଇଷ୍ଟଭୃତି' ବହି ଦୁଇଖଣ୍ଡ ତାଙ୍କ ଶ୍ରୀହସ୍ତକୁ ବଢ଼ାଇ ଦେଲି । ତାଙ୍କରି କରକମଳରେ ଉନ୍ମୋଚନର ଇଚ୍ଛା ଥିଲା । ତାହାହିଁ ହେଲା ।





ବହି ଦେଖୁ ଦେଖୁ କହିଲେ – "ବାଃ !" ବହିଟି ଏପଟ ସେପଟ କରି ଖୋଲି କିଛି ସମୟ ପଢ଼ିଲେ ଏବଂ କହିଲେ – "ଭାଲୋ" । ମୁଁ ତାଙ୍କ ସାନ୍ନିଧ୍ୟରେ ବସିଲି ପ୍ରାୟ ଅନେକ ସମୟ । ଭାବୁଥାଏ – ପ୍ରଶ୍ନଟିଏ କରିବି – କାହିଁକି ଏପରି ହେଲା ମୋ ଜୀବନରେ ? କିନ୍ତୁ ମନେପଡ଼ିଲା – ମୋ ସ୍ତ୍ରୀ କହିଥାଏ – ଆମ ଦୁଃଖର କଥା ତାଙ୍କୁ କହି ଦୁଃଖ ଦେବନି । କିନ୍ତୁ ସେ ତ ଅନ୍ତର୍ଯାମୀ, ସବୁ ଜାଣନ୍ତି । ପ୍ରଶ୍ନର ଉତ୍ତର ପାଇଲି ସର୍ବଭାରତୀୟ ଋତ୍ୱିକ୍ ସମ୍ମେଳନରେ ଶ୍ରୀଶ୍ରୀଦାଦାଙ୍କ ବକ୍ତବ୍ୟରେ । ଶ୍ରୀଶ୍ରୀଦାଦା କହିଲେ – "× × × ପୃଥିବୀରେ apparently (ଆପାତଃ ଦୃଷ୍ଟିରେ) ଯା' ଦେଖୁଛି – ଘର-ସଂସାର, ପୁଅ-ଝିଅ, ବନ୍ଧୁ-ବାନ୍ଧବ, ଆତ୍ମୀୟ-ସ୍ୱଜନ । ସବୁ ନେଇ ଆନନ୍ଦର ହାଟ । ଭଲକରି ଯଦି ଦେଖାଯାଏ, ଏହା ମଧ୍ୟରେ ହିଁ ଦୁଃଖ ନିହିତ । ସୁଖ ମଧ୍ୟରେ ହିଁ ଦୁଃଖ । ମୋର ଏକମାତ୍ର ପୁତ୍ର, ହଠାତ୍ ଅସୁସ୍ଥ ହେଲା, ବଞ୍ଚାଇ ହେଲାନି, ମରିଗଲା । ଯେଉଁ ପୁତ୍ରକୁ ନେଇ ଆନନ୍ଦ କରୁଥିଲି, ସେ ମରିଯିବାରୁ ଦୁଃଖ ହେଲା । ବାପା-ମାଆଙ୍କ କୋଳରେ ଜନ୍ମିଛି । ସେହି ବାପା-ମାଆ ଯେତେବେଳେ ନ ରହନ୍ତି, ସେମାନଙ୍କ କଥା ମନେକରିଲେ ଆଖିରେ ପାଣି ଆସେ । ଜାଗତିକ ପ୍ରତ୍ୟେକଟା ସମ୍ବନ୍ଧ ମଧ୍ୟରେ ଦୁଃଖ । ପ୍ରତ୍ୟେକଟି ସୁଖ ମଧ୍ୟରେ ଦୁଃଖ । ଦୁଃଖ ଛଡ଼ା ମଣିଷ ବଞ୍ଚେନା । ଏଥିରୁ କେହି ରିହାଇ ପାଇବେନି । ଦିନେ ନା ଦିନେ ବେଦନାର୍ତ୍ତ ହେବାକୁ ପଡ଼ିବ ହିଁ । ମତେ ଆକ୍ରମଣ କରିବାକୁ ସବୁ ବସିଅଛି । ଦୁଃଖରୁ ବଞ୍ଚିବାର ଉପାୟ ଦୟାଲଠାକୁର – ପୁରୁଷୋତ୍ତମ । ଅନ୍ୟ ପଥ ନାହିଁ । ଠାକୁରଙ୍କୁ ନିଜର କର, ଭଲପାଅ, ତାଙ୍କୁ ପ୍ରିୟପରମ କର । ସିଏ ସବୁ ଦୁଃଖରୁ ରକ୍ଷା କରନ୍ତି । × × ×"

ସନ୍ଧ୍ୟା ସମୟରେ ପୂଜନୀୟ ବିଙ୍କିଦା'ଙ୍କୁ ଦର୍ଶନ କରିବାବେଳେ ନାନାପ୍ରସଙ୍ଗରେ ଆଲୋଚନା ହେଲା । ମୋ ସହିତ ଥିଲେ ମୋ ସାନଭାଇ ନୀରଦ (ବାଆଜୀ), ଦୀପକ (ରାଜଗୁରୁ) ଓ ମୋ ପୁତୁରା ଜ୍ୟୋତିଷ ଆଲୋଚନା ଶେଷରେ ମୋ ପୁଅ ବିଷୟ ଉଠିଲା । ବିଙ୍କିଦା କହିଲେ – "ମୁଁ ସବୁ ଜାଣିଛି । ଆପଣ ବ୍ୟସ୍ତ ହୁଅନ୍ତୁନି । ଆମେ ସବୁ ଯେଉଁଠୁ ଆସିଛେ, ସେ ସେଇଠିକୁ

  

ଯାଇଛନ୍ତି । ଆପଣ ଠାକୁରଙ୍କ କାମ କରୁଛନ୍ତି, ସେ ବି ଠାକୁରଙ୍କ କାମ କରୁଥିଲେ; ଏହାକୁ ଆପଣ positively ଗ୍ରହଣ କରନ୍ତୁ ।" – ଏହା ସତ୍ୟ, ମାତ୍ର positively ଗ୍ରହଣ କରିବା କେତେ କଷ୍ଟ !!

ଆମ ସମସ୍ତଙ୍କୁ ଦୁନିଆ ଛାଡ଼ିବାକୁ ପଡ଼ିବ; କିନ୍ତୁ ଯିଏ ପଛରେ ଯିବାକଥା, ସେ ଆଗ ଚାଲିଗଲା ଓ ଆଗ ଯିବା ଲୋକଟା ପଛକୁ ରହିଗଲା – ଏହାହିଁ ଦାରୁଣ କଷ୍ଟ । ଅନେକେ ମୋତେ ପରାମର୍ଶ ଦେଉଛନ୍ତି – ଯାହା ଗତ ହେଲା, ତାକୁ ଭୁଲିବାକୁ ଚେଷ୍ଟା କର, କାରଣ ଏହାର ବିକଳ୍ପ ନାହିଁ । ବିକଳ୍ପ ନାହିଁ – ଏହା ଠିକ୍ । ମାତ୍ର ଭୁଲିବା କ'ଣ ସମ୍ଭବ ? ବରଂ ଯେତେଦିନ ଅତୀତ ହେଉଛି; ସେତେ ସେତେ ତା'ର ସ୍ମୃତି ଭିଡ଼ ଜମାଉଛି । ତା'ର ଭାବନା ଅଛି, ରହିବ, ତା'ରି ଗୁଣ ଗୁଣିହେବି, ତାକୁ ଝୁରି ଝୁରି ମରିବି – ଏହାହିଁ ବୋଧେ କପାଳଲିଖନ । ତା' ବୋଉ (ଅର୍ଥାତ୍ ମୋ ସ୍ତ୍ରୀ) ମୋତେ ପ୍ରାୟ ଅଧିକାଂଶ ସମୟରେ କହୁଛି – "କାଇଁ ବ୍ୟସ୍ତ ହେଉଛ ? କାହିଁକି କାନ୍ଦୁଛ ? ଯେତେ କାନ୍ଦିଲେ ସେ କ'ଣ ଆଉ ଫେରିବ ?" କିନ୍ତୁ କେହି ନ ଥିଲାବେଳେ ତା' ଫଟୋକୁ ଧରି ଏକୁଟିଆ ବସି କାନ୍ଦୁଛି । ଅନେକ ସମୟରେ ମୁଁ ଶୁଣୁଛି, ସେ ଠାକୁର ପ୍ରାଖରେ ପ୍ରାର୍ଥନା କରୁଛି – "ହେ ପ୍ରଭୁ ! ଏପରି ଦୁଃଖ, ଏପରି ପୁତ୍ରଶୋକ ଦୁନିଆରେ କାହାରିକୁ ଦିଅନ୍ତୁନି ।" କବି ତ ସେଇଥିପାଇଁ ଲେଖିଛନ୍ତି –

"ଚିତାନଳେ ଭସ୍ମ ନୁହେଁ ସେନେହ ବନ୍ଧନ,
ଶ୍ମଶାନ ନୁହଁଇ ଜୀବ ଶେଷ ପରିସୀମା ।
କେବେ କାହିଁ ହେବ ପୁଣି ଶୁଭ ସମ୍ମେଳନ,
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ ମାଧୁରିମା ।।"

**ଶ୍ରୀ ହୃଷୀକେଶ ଆଚାର୍ଯ୍ୟ**



# ❖ ରଶ୍ମୀଶ ସ୍ମରଣେ ❖



## ଶୁଭେଚ୍ଛୁ, ବନ୍ଧୁ ଓ ପ୍ରିୟଜନଙ୍କର
## ସ୍ମୃତିଚାରଣ

---

"ମୁହୂର୍ତ୍ତେ ମାତର          ଉଜ୍ଜ୍ୱଳ ପ୍ରଖର
ଶିଖାଟେକି ହୁତାଶନ,
ଜଳି ଯେବେ କରେ          ଆଲୋକ ଉତ୍ତାପ
ଚଉଦିଗେ ବିତରଣ ।

ଲିଭୁ ସେ କ୍ଷଣିକେ          ତଥାପି ଏ ଲୋକେ
ରହେ ତା' ଆଦର ଯଶ,
କି ଲୋଡ଼ା ତହିଁରେ          ରହେ ଯେ ମହୀରେ
କୁହୁଳି ସହସ୍ର ବର୍ଷ ।"





# ଚିର ଔଜ୍ଜ୍ୱଲ୍ୟମୟ ସେ ସ୍ମୃତି


**ପ୍ରଫେସର ଡ. ହୃଷୀକେଶ ସେନାପତି (ସ.ପ୍ର.ର)**

ପ୍ରାକ୍ତନ ଡିନ୍, ଓ.ୟୁ.ଏ.ଟି., ଭୁବନେଶ୍ୱର


ଘଟଣାବହୁଳ ଜୀବନରେ ଅନେକ ଘଟଣା ପ୍ରତିନିୟତ ଘଟି ଚାଲିଥାଏ । ପ୍ରତ୍ୟେକ ଘଟଣା ଭିତରେ ଯଦିଓ କିଛି ଭଲ-ମନ୍ଦ, ସୁଖ-ଦୁଃଖ, ଆନନ୍ଦ-ନିରାନନ୍ଦ, ମିଳନ-ବିରହ ଇତ୍ୟାଦି ଜଡ଼ିତ ଥାଏ; କିନ୍ତୁ କିଛିଟା ସ୍ମୃତିର ଗଭୀରତମ ପ୍ରଦେଶକୁ ଭେଦ କରିଥାଏ । ଜନ୍ମ ମୃତ୍ୟୁର ବ୍ୟବଧାନର ସମୟକୁ ଜୀବନ ଭାବି ମଣିଷ ଅନେକ ଭାବେ ତାକୁ ନିୟୋଗ କରେ । ମୃତ୍ୟୁ ଯଦିଓ ଅବଧାରିତ; କିନ୍ତୁ ତା'ର ପ୍ରାସଙ୍ଗିକତା ଅନେକ ପ୍ରଭାବ ସୃଷ୍ଟି କରିଥାଏ । କରୁଣାମୟଙ୍କର ଏଇ ବିଚିତ୍ର ସୃଷ୍ଟିରେ ତାଙ୍କର ଲୀଳା ମଣିଷ ପାଖରେ ଅବିଦିତ ରହିଯାଏ । ତାଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି ଏଇ ମାନବତନୁ କ୍ଷିତ୍, ଅପ୍, ତେଜ, ମରୁତ୍ ଓ ବ୍ୟୋମ ରୂପକ ପଞ୍ଚଭୂତରେ ମିଳାଇଗଲେ ବି ଭିତରର ସେଇ ଅମୂଲ୍ୟ ଶକ୍ତି ଅମର ରହିଯାଏ । ସେଇ ଓଜସ୍ୱିନୀ ଶକ୍ତି ହିଁ ସବୁକାଳେ ତାକୁ ପ୍ରତିଷ୍ଠିତ କରାଇଥାଏ । ରଦ୍ଧୀଶ ତା'ର ସ୍ୱଳ୍ପକାଳ ଅବସ୍ଥାନରେ ସେଇ ଅମୃତମୟ ଶକ୍ତିର ପୂର୍ଣ୍ଣ ବିନିଯୋଗ କରାଇପାରିଥିଲା, ଯାହାକି ଆଜି ପ୍ରତିଟି ସ୍ମୃତିରାଜିରେ ତା' ଚିର ବିଦ୍ୟମାନ୍ ।

ରଦ୍ଧୀଶର ବାପା ଶ୍ରୀ ହୃଷୀକେଶ ଆଚାର୍ଯ୍ୟ, ସ.ପ୍ର.ର.ଙ୍କ ସହିତ ମୋର ପରିଚୟ ସତୁରି ଦଶକରୁ । ତାଙ୍କର ଗ୍ରାମ ଲଥାଙ୍ଗକୁ ମଧ୍ୟ ବହୁବାର ସତ୍‌ସଙ୍ଗ ମାଧ୍ୟମରେ ଯିବାର ସୁଯୋଗ ମିଳିଛି । ସୁତରାଂ ତାଙ୍କ ପରିବାର ସହିତ ମୋର ପରିଚୟ ବହୁ ପୁରୁଣା । ବାଲ୍ୟକାଳର ପଢ଼ାଶୁଣା ଗ୍ରାମ ପରିବେଶରେ ସମାପ୍ତ ପରେ ବାହାରକୁ ଆସି କଲେଜ ଓ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନରେ ସ୍ନାତକୋତ୍ତର କୃତିତ୍ୱର ସହ ସମ୍ପୂର୍ଣ୍ଣ କରେ । ପାଠ ପଢ଼ା ସହିତ ରଦ୍ଧୀଶ ନିଜକୁ ଖୁବ୍ ସଂସ୍କୃତ

କରି ଗଢ଼ିତୋଳେ ସତ୍‌ସଙ୍ଗ ଧାରାରେ । ଭୁବନେଶ୍ୱରରେ ସେ ରହିବାକୁ ପସନ୍ଦ କରେ । ଏଇ ସମୟରେ ସେ ମୋ ସାନ୍ନିଧରେ ଆସିବାର ସୁଯୋଗ ପାଏ । ପ୍ରାୟ ପ୍ରତିଦିନ ଆମ ଘରକୁ କିମ୍ବା ଅଫିସ୍‌କୁ ଆସି ମୋ ସହିତ ଦେଖା କରିବାର ସୁଯୋଗ ବଢ଼ାଏ । ସତ୍‌ସଙ୍ଗ ପ୍ରତି ଅକାଟ୍ୟ ନିଷ୍ଠା ଓ ଭଲପାଇବା ଫଳରେ ବିଭିନ୍ନ ଜାଗାରେ ବନ୍ଧୁବାନ୍ଧବ, ସାଙ୍ଗସାଥିମାନଙ୍କୁ ନେଇ ଯାଜନ ଓ ସତ୍‌ସଙ୍ଗ ଇତ୍ୟାଦି ଆୟୋଜନ କରାଇବାରେ ବ୍ରତୀ ହୁଏ । ତା'ର ପ୍ରତିଟି ପରିବେଶରେ ଇଷ୍ଟସ୍ୱାର୍ଥ ପ୍ରତିଷ୍ଠା କରାଇବାପାଇଁ ପ୍ରବଳ ଆଗ୍ରହୀ ହୋଇଉଠେ । ଏପରିକି ଭୁବନେଶ୍ୱରରୁ ଯାଇ ନିଜ ଗ୍ରାମରେ ଯୁବକମାନଙ୍କୁ ଏକତ୍ର କରାଇ ଶ୍ରୀଶ୍ରୀଠାକୁରଙ୍କର ଉତ୍ସବ କରାଇବାକୁ ସମର୍ଥ ହୁଏ । ତାଙ୍କ ଗ୍ରାମ ଓ ପରିବାର ସହିତ ମୋର ଥିବା ପୂର୍ବ ସମ୍ପର୍କକୁ ଆହୁରି ମଜଭୂତ କରାଇବାରେ ସହାୟକ ହୁଏ ।

ସବୁ ସ୍ତରର ବ୍ୟକ୍ତି ବିଶେଷଙ୍କ ସହିତ ସେ ଖୁବ୍ ସହଜରେ ମିଶି ପାରୁଥିଲା ଓ ସୁସମ୍ପର୍କ ମଧ୍ୟ ସ୍ଥାପନ କରିପାରିଥିଲା । ଏପରିକି ବନ୍ଧୁ ବରିଷ୍ଠ ପ୍ରଶାସକ, ରାଜନୀତିଜ୍ଞ, ସମାଜ ସଂସ୍କାରକ ଓ ଶିକ୍ଷାବିତ୍‌ମାନଙ୍କ ସହିତ ତା'ର ବ୍ୟକ୍ତିଗତ ସମ୍ପର୍କ ଖୁବ୍ ଭଲ ଥିଲା । ତା'ର ବିକଶିତ ବ୍ୟକ୍ତିତ୍ୱର ଝଲକ୍ ଥିଲା ଏକ ସ୍ୱତନ୍ତ୍ର । ରବ୍ଧୀଶର ହସ ହସ ମୁହଁ, ଶାଳୀନତା ଓ ବିନମ୍ରତା ସମସ୍ତଙ୍କୁ ଆକର୍ଷିତ କରୁଥିଲା । ଖୁବ୍ ସଦାଚାରୀ, ସ୍ୱଳ୍ପଭାଷୀ, ମିଷ୍ଟତା, ବିନୟୀ ଓ ପରିଷ୍କାର ପରିଚ୍ଛନ୍ନତା ଯେପରି ତା'ର ଚିରସାଥୀ । ପାଠପଢ଼ା ଓ ଗବେଷଣା ପ୍ରତି ଖୁବ୍ ଆଗ୍ରହୀ ଥିଲା । ସବୁ ସମୟରେ ନୂଆ ନୂଆ ତଥ୍ୟ ସମ୍ବଳିତ ଲେଖା ଆଣି ମୋ ସହିତ ଆଲୋଚନାରେ ରତ ରହୁଥିଲା ।

ଉଚ୍ଚଶିକ୍ଷା ପ୍ରତି ଯଦିଓ ତା'ର ପ୍ରବଳ ଆଗ୍ରହ ଥିଲା; କିନ୍ତୁ ପାରିବାରିକ ଓ ପାରିପାର୍ଶ୍ୱିକ ଅବସ୍ଥାକୁ ଲକ୍ଷ୍ୟ କରି ମୋ ସହିତ ପୁଙ୍ଖାନୁପୁଙ୍ଖ ଆଲୋଚନା କରେ । ତା'ର ଦୂରଦୃଷ୍ଟି ମଧ୍ୟ ଥିଲା ପ୍ରଖର । ମୁଁ ଗୋଟିଏ ବିଶେଷ ଦିଗ ତା'ରେ ଲକ୍ଷ୍ୟ କରିଥିଲି, ସେ କେବଳ ଉପରଠାଉରିଆ ଉପଦେଷ୍ଟାର ଆସନରେ ବସାଇ ନ ଥିଲା; ବରଂ ଯାହା କହୁଥିଲି, ତାହା ପ୍ରାଣପଣେ ଚେଷ୍ଟାକରି ବାସ୍ତବାୟିତ କରୁଥିଲା, ସେ ତା'ର ବ୍ୟକ୍ତିଗତ ହେଉ ବା ସତ୍‌ସଙ୍ଗର ହେଉ । କିଛି ଦିନ





ପରେ ସେ ଗୋଟିଏ ଆବାସିକ ବିଜ୍ଞାନ ମହାବିଦ୍ୟାଳୟରେ ନିଯୁକ୍ତି ପାଏ । ଅଧ୍ୟାପକ ଭାବେ ବହୁ ସମୟ ସେ ଦିଗରେ ବିନିଯୋଗ କରିବା ହେତୁ ସେ ତା'ର ନିଜର ଭବିଷ୍ୟତ ଉଚ୍ଚଶିକ୍ଷା ତଥା ସ୍ଥାୟୀ ଚାକିରି କଥା ଚିନ୍ତାକରି ସମ୍ପୂର୍ଣ୍ଣ ହତୋତ୍ସାହ ଓ ନିରୁତ୍ସାହିତ ହୋଇପଡ଼େ । ବହୁ ଆଲୋଚନା ପରେ ଆମେ ସିଦ୍ଧାନ୍ତ ନେଲୁ, କୌଣସି ବିଶ୍ୱବିଦ୍ୟାଳୟରେ ନାମ ପଞ୍ଜୀକୃତ କରାଇ ନିୟମିତ କ୍ଲାସ୍ ନ କରି ପି.ଏଚ୍‌ଡି. କରିବାପାଇଁ । ୟୁ.ଜି.ସି.ର ନିର୍ଦ୍ଦେଶାନୁଯାୟୀ ପ୍ରାୟ ଦେଶର ସବୁ ବିଶ୍ୱବିଦ୍ୟାଳୟରେ ଏ ବ୍ୟବସ୍ଥା ବନ୍ଦ ହେଉଥାଏ । ଏଇଭଳି ଏକ ସଙ୍କଟପୂର୍ଣ୍ଣ ଅବସ୍ଥାରେ ରଦ୍ଧୀଶ ଆଶ୍ରମକୁ ଯାଇ ପରମ ପୂଜ୍ୟପାଦ ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦାଙ୍କର ଶୁଭ ଆଶୀର୍ବାଦ ଲାଭ କରେ । ଶ୍ରୀଶ୍ରୀଦାଦା ତାକୁ Ligateରେ ଲେଖାଦେବାକୁ ମଧ୍ୟ ଆଶୀର୍ବାଦ ପ୍ରଦାନ କରନ୍ତି ।

ଆଶ୍ରମରୁ ଫେରିବା ପରେ ତା' ଜୀବନରେ ଗୋଟିଏ ନୂଆ ମୋଡ଼ ନିଏ । ସେ ସମ୍ପୂର୍ଣ୍ଣ ବିଶ୍ୱାସୀ ଥାଏ ଯେ, ତା'ର ସ୍ୱପ୍ନ ନିଶ୍ଚୟ ସାର୍ଥକ ହେବ । ଗଭୀର ବିଶ୍ୱାସରେ ସବୁ କିଛି ହୋଇପାରେ । ଆଶ୍ଚର୍ଯ୍ୟର କଥା, ଶ୍ରୀଶ୍ରୀଠାକୁରଙ୍କ ଅପାର କରୁଣାରୁ ଓ ଶ୍ରୀଶ୍ରୀଦାଦାଙ୍କର ଅମୀୟ ଆଶୀର୍ବାଦରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଶେଷଥରପାଇଁ Traditional Systemରେ Ph.D. Registrationପାଇଁ ଅନୁମତି ପ୍ରଦାନ କରେ । ଏ ଭିତରେ ତା'ର ଆମ ବିଶ୍ୱବିଦ୍ୟାଳୟର ଗବେଷଣାଗାର ଓ ପ୍ରଫେସର ତଥା ଗବେଷକମାନଙ୍କ ପ୍ରତି ଗୋଟିଏ ସହଜ ଭଲପାଇବା ଓ ଆକର୍ଷଣ ସୃଷ୍ଟି ହୁଏ । ସେ ମୋର Biodata ନେଇ Utkal Universityର ବିଧିସ୍ୱୀକୃତ (Recognised) ଗାଇଡ୍ ହେବାପାଇଁ ସମସ୍ତ କାଗଜପତ୍ର ପ୍ରସ୍ତୁତ କରାଏ । ମୋର ବିଷୟ ମୃତ୍ତିକା ଓ କୃଷି ରସାୟନ ବିଭାଗ; କିନ୍ତୁ ତା'ର ଜୀବବିଜ୍ଞାନ । ତେଣୁ ମୁଁ ଓ ସେ ପ୍ରାୟ ଦୁଇ ତିନିମାସ ଲାଗି ତା'ର ବିଷୟକୁ ଖାପ ଖୁଆଇବା ଭଳି ବହୁ ବୈଜ୍ଞାନିକ ତଥ୍ୟ ସଂଗ୍ରହ କରି ଗୋଟିଏ Synopsis (ସଂକ୍ଷିପ୍ତ ବିବରଣୀ) ପ୍ରସ୍ତୁତ କରାଇଲୁ । ଯେହେତୁ ତା'ର ଏମ୍.ଏସ୍‌ସି.ରେ ବାୟୋକେମିଷ୍ଟ୍ରି ଥିଲା, ତେଣୁକରି ଅନେକ ଜିନିଷ ବୁଝିବାପାଇଁ ତାକୁ ସହଜ ହେଲା । ଉକ୍ତ Synopsisରେ Zoology, Soil Science &

  

Agricultural Chemistry, Micro-biology, Nematology, Bio-technology ଓ Bio-informaticsର କେତେକ ତଥ୍ୟ ସନ୍ନିବେଶିତ ଥିବା ଯୋଗୁଁ Utkal Universityର Seminar (ଆଲୋଚନାଚକ୍ର)ରେ କମିଟିର ବରିଷ୍ଠ ପ୍ରଫେସରମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ତା'ପରେ ସେ ଖୁବ୍ ନିଷ୍ଠା ସହକାରେ Field Experiement ଓ Laboratory Experiment କରି ଚାଲିଥାଏ । କଲେଜ ସମୟକୁ adjust କରି ଖୁବ୍ କଠିନ ପରିଶ୍ରମ କରୁଥାଏ ।

ଏହି ସମୟକୁ ଆମ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ College of Basic Science & Humanitiesରେ ଡେମୋନ୍ଷ୍ଟ୍ରେଟର୍ ପୋଷ୍ଟ ବାହାରେ ଓ ଯୋଗକୁ ମୁଁ ସେଇ କମିଟିର୍ ଚେୟାର୍‌ମ୍ୟାନ୍ ଥିଲି । ଋଦ୍ଧୀଶ ସେଥିରେ କୃତିତ୍ୱ ହାସଲ କରି ପରେ ସେଇ ପଦବୀରେ ଯୋଗ ଦେଇଥିଲା । ତା'ର କାର୍ଯ୍ୟକଳାପ ସମସ୍ତଙ୍କୁ ଖୁବ୍ ମୁଗ୍ଧ କରିଥିଲା । ବିଶ୍ୱବିଦ୍ୟାଳୟ ଛାତ୍ର ସତ୍‌ସଙ୍ଗ ସଙ୍ଗଠନର ମଧ୍ୟ ସେ ଦାୟିତ୍ୱ ଗ୍ରହଣ କରି ଖୁବ୍ ସୁଚାରୁ ରୂପେ ନିର୍ବାହ କରି ଚାଲିଥାଏ । ପରେ ପରେ ବିବାହ ସମ୍ପନ୍ନ ହୁଏ ଓ ସେଇ ଉପଲକ୍ଷେ ବିବାହ ଅଭ୍ୟର୍ଥନାକୁ ମୁଁ ସପରିବାର ତାଙ୍କ ଗ୍ରାମକୁ ଯିବାର ସୁଯୋଗ ପାଏ । ମନେ ହେଉଥିଲା, ଯେପରି ଏହା ଏକ ଜିଲ୍ଲା ସତ୍‌ସଙ୍ଗ ଉତ୍ସବ । ପରବର୍ତ୍ତୀ ଅଧ୍ୟାୟରେ ବିଶ୍ୱବିଦ୍ୟାଳୟର ଗୋଟିଏ ସ୍ଥାୟୀ ଘର ପାଏ ଓ ସସ୍ତ୍ରୀକ ସେଠାରେ ଅବସ୍ଥାନ କରେ । ପରିବାରର ସମସ୍ତଙ୍କୁ ଡକାଇ ସେଠାରେ ମଧ୍ୟ ଗୋଟିଏ ସତ୍‌ସଙ୍ଗ ପ୍ରଦାନ କରେ । ଭୁବନେଶ୍ୱରରେ ଅବସ୍ଥାନ କରୁଥିବା ସମସ୍ତ ସମ୍ପର୍କୀୟଙ୍କୁ ତଥା ତାଙ୍କ ଅଞ୍ଚଳର ଅନେକ ବ୍ୟକ୍ତିଙ୍କୁ ସ୍ନେହ ଓ ଭଲପାଇବାର ବନ୍ଧନରେ ବାନ୍ଧି ଦେଇଥିଲା । ସମସ୍ତଙ୍କ ପାଖରେ ସତ୍‌ସଙ୍ଗର ଦର୍ଶନ ପହଞ୍ଚାଇବାପାଇଁ ସବୁ ସମୟରେ ଖୁବ୍ ନିଷ୍ଠା ଓ ଆଗ୍ରହ ସହକାରେ ଲାଗିପଡ଼ିଥାଏ । ଆଚାର୍ଯ୍ୟଦେବଙ୍କ ଆଶୀର୍ବାଦକ୍ରମେ ଶ୍ରୀଶ୍ରୀଠାକୁରଙ୍କର ପବିତ୍ର ଯାଜକ ପାଞ୍ଜା ମଧ୍ୟ ପ୍ରାପ୍ତ ହୁଏ । ତା'ର ପିଏଚ୍.ଡି. କାମ ସରିବା ପରେ ଲେଖାଲେଖି ପ୍ରାୟ ସରି ଯାଇଥିଲା । ଟାଇପ୍ କରାଇ ଗୋଟିଏ ପରେ ଗୋଟିଏ Chapter ମୋତେ ଦେଇ ସଂଶୋଧନ କରାଉଥାଏ । କିଛିଦିନ ଧରି ପ୍ରାୟ ମାସେ ହେବ ତା'ର ସହକାରୀ ଗାଇଡ୍ ପ୍ରଫେସର ଡକ୍ଟର





ଆଶିଷ କୁମାର ଦାଶ ଓ ମୋ ସହିତ ବସିବା ଆରମ୍ଭ କରିଥାଏ । ଏପରିକି ପିଏଚ୍.ଡି. ଶେଷ ପରୀକ୍ଷା ଅର୍ଥାତ୍ ଥେସିସ୍ ଭାଇବାବସ୍‌ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ନିର୍ଦ୍ଦେଶ ମୁତାବକ ବାହାର ପ୍ରଦେଶର ସମ୍ଭାବ୍ୟ ପରୀକ୍ଷକଙ୍କ ନାମ ଓ ଠିକଣା ମଧ୍ୟ ପଠା ସରିଥିଲା ।

ସେଦିନ ଦିନବେଳା ଗୋଟିଏ ସତ୍‌ସଙ୍ଗରେ ଯୋଗଦେବାପାଇଁ ସସ୍ତ୍ରୀକ ସତ୍‌ସଙ୍ଗ ବିହାରର କର୍ମୀମାନଙ୍କ ସଙ୍ଗରେ ସକାଳୁ ସକାଳୁ ଏରସମା ଅଭିମୁଖେ ବାହାରିଥିଲୁ । ଭୁବନେଶ୍ୱର ଓ କଟକ ମଝି ରାସ୍ତାରେ ହଠାତ୍ ଆମ ଡିପାର୍ଟମେଣ୍ଟର ପ୍ରଫେସର ଆଶିଷ ଦାଶଙ୍କର ଗୋଟିଏ ଫୋନ୍ ପାଇଲି, "ସାର୍ ! ରବ୍ଧୀଶର ଖବର କିଛି ପାଇଛନ୍ତି ? ସେ ଦୁଇଦିନ ତଳେ ମୋ ପାଖକୁ ଆସିଥିଲା । ଏବେ ଖବର ପାଇଲି ସେ... ଚାଲିଗଲା ।" କଥା ସେତେ ସ୍ପଷ୍ଟ ହେଉ ନ ଥିଲା । ତା' ପରେ ପରେ ଘନ ଘନ ଫୋନ୍ । ଗୋଟିକ ପରେ ଗୋଟିଏ । କେତେବେଳେ ୟୁନିଭରସିଟି କର୍ମଚାରୀ ତ କେତେବେଳେ ଗୁରୁଭାଇ ବା ଆତ୍ମୀୟସ୍ୱଜନଙ୍କଠାରୁ । କାନକୁ ବିଶ୍ୱାସ କରିହେଉ ନ ଥାଏ ବା ମନକୁ ମଧ୍ୟ ବୁଝାଇ ହେଉ ନ ଥାଏ । ଗାଡ଼ି ଭିତରେ ଶୋକର ଛାୟା; ଭଙ୍ଗା ମନ ଓ ଭାରାକ୍ରାନ୍ତ ହୃଦୟରେ ସତ୍‌ସଙ୍ଗ ପରେ ତାଙ୍କ ଗ୍ରାମରେ ପହଞ୍ଚି କେବଳ ଶୋକାକୂଳ ପରିବେଶ ହିଁ ଦର୍ଶନ କଲୁ । ଭୁବନେଶ୍ୱରରୁ ତା'ର ସେଇ ପାର୍ଥିବ ଶରୀର ପହଞ୍ଚିବାର ଯଥେଷ୍ଟ ଆଗରୁ ଆମେ ପହଞ୍ଚି ଯାଇଥିଲୁ । ସେଠାକାର କରୁଣ ହୃଦୟ ବିଦାରକ ଦୃଶ୍ୟ ସମସ୍ତ ପରିବେଶକୁ ସ୍ତବ୍ଧ କରିଦେଇଥିଲା । ପରମ ପିତା ଏଭଳି ଏକ ଶୁଦ୍ଧ ଆତ୍ମାକୁ ପ୍ରେରିତ କରି କ୍ଷଣିକ ଭୋଗ ସାମଗ୍ରୀର ପସରା ବାଢ଼ିଦେଇ ପୁଣି ନେଇଯାଆନ୍ତି । ଅପୂର୍ବ ସେ ଲୀଳା । ଶେଷ ଦର୍ଶନ ପରେ ସେଇ ପୁଣ୍ୟ ଆତ୍ମାର ଅମୃତଧାମକୁ ଗମନ ପାଇଁ ଓ ବିଶ୍ୱସ୍ରଷ୍ଟା ପୁରୁଷୋତ୍ତମଙ୍କର ପାଦପୀଠ ତଳେ ସ୍ଥାନ ପାଇବାପାଇଁ ପ୍ରାର୍ଥନା କରି ପ୍ରତ୍ୟାବର୍ତ୍ତନ କଲୁ । କାଲି ଭଳି ଲାଗୁଛି ସେଦିନ । ଏ ଭିତରେ ପ୍ରଥମ ବାର୍ଷିକ ଶ୍ରାଦ୍ଧ ଦିବସ ସମାଗତ । କିନ୍ତୁ ସେ ସ୍ମୃତି ଆଜି ଚିର ଔଜଲ୍ୟମୟ, ଯାହାକି ମନେପକାଏ ତା'ର ବହୁ ପ୍ରତିଭାପୂର୍ଣ୍ଣ ବ୍ୟକ୍ତିତ୍ୱର ।







# ଚିରଶାନ୍ତି

**ଗୁରୁଚରଣ ଦାସ**
ଚନ୍ଦାପାଟ (ଭାଟସାହି), କିଆଡିଙ୍ଗୀ, ଜଗତ୍‌ସିଂହପୁର

"ତୋମାକେ ଯଖନ ମନେପଡ଼େ, ଧରା ମନେ ହୟ ଜନହୀନ... ।" ପରମପୂଜ୍ୟପାଦ ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦାଙ୍କ ବିରଚିତ ଏଇ ଭଜନଟି ମୋ ଫୋନ୍‌ରେ ବାଜିଉଠିଲା । ମୁଁ ଖାଇ ବସୁଥାଏ । ସିଲୁ ଫୋନ୍‌ଟି ମୋ ହାତକୁ ବଢ଼ାଇ ଦେଉ ଦେଉ କହିଲା, ଦିପୁନା ଫୋନ୍ କରିଛନ୍ତି । ମୋ ପାଟିରୁ ବାହାରି ଆସିଲା, ଏଇତ ଅଧଘଣ୍ଟା ପୂର୍ବରୁ ସତ୍‌ସଙ୍ଗ କେନ୍ଦ୍ରରୁ ଫେରିଚି । ସେଦିନ ଥିଲା ୨୦୧୪ ମସିହା ଅଗଷ୍ଟ ୧୮ ତାରିଖ ସୋମବାର । ଭାଦ୍ରବ ସତ୍‌ସଙ୍ଗ ପରିକ୍ରମାର ପ୍ରଥମ ଦିବସ । ସତ୍‌ସଙ୍ଗରୁ ଫେରି ନିତ୍ୟ ନୈମିତ୍ତିକ କାର୍ଯ୍ୟରେ ଯୋଗଦେବାକୁ ହେବ । ସେଥିପାଇଁ ଖାଇବାପାଇଁ ପ୍ରାକ୍ ପ୍ରସ୍ତୁତି । ଡାଲି ଗୋଳା ସରିଥିବା ଭାତଗୁଣ୍ଡାଟି ପାଟି ପାଖକୁ ଯିବାକୁ ପ୍ରସ୍ତୁତ ହେଉ ହେଉ ଦିପୁନାର ଫୋନ୍ କଲ । ଫୋନ୍‌ଟି ରିସିଭ୍ କରି ମୋ ହାତକୁ ବଢ଼ାଇ ଦେଲା 'ସିଲୁ' । ହାଲୋ - ଦିପୁନା, କ'ଣ ହେଲା ? କମ୍ ଶବ୍ଦରେ ସେପଟୁ ମୋ କାନରେ ବାଜିଲା – "ରଦ୍ଧୀଶ ଚାଲିଗଲା ।" ବିଶ୍ୱାସ କରିପାରିଲିନି । ପୁଣି ଥରେ ପଚାରିଲି – "କ'ଣ ହେଲା ?" ପୁଣି ସେପଟୁ ଦ୍ୱିତୀୟ ଥରର ଉତ୍ତର – "ରଦ୍ଧୀଶ ଚାଲିଗଲା ।" ମୋର ଦ୍ୱିତୀୟ ଥରର ପ୍ରଶ୍ନ – "କ'ଣ ହେଲା ?" ସାମାନ୍ୟ ଉଚ୍ଚସ୍ୱରରେ ଦିପୁନାର ଉତ୍ତର ଥିଲା – "ଭାଇନାଙ୍କ ପୁଅ ରଦ୍ଧୀଶ ଚାଲିଗଲା ।" ମୁଁ ହତବାକ୍ ହୋଇପଡ଼ିଲି । ସେପଟୁ ଫୋନ୍ କଟିଗଲା । ଭାତଗୁଣ୍ଡା ଧରିଥିବା ହାତଟି ତଳକୁ ଖସିଗଲା । ମୁଁ ଉଠିଗଲି ! ହାତ ଧୋଇବାକୁ । ସିଲୁର ପ୍ରଶ୍ନ - "କ'ଣ ହେଲା ? ଉଠିଗଲ ଯେ... ।" ମୋ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ମୋ କଣ୍ଠରୁ ଥର ଥର ହୋଇ ଅଧାବାକ୍ୟଟିଏ ବାହାରି ଆସିଲା ।

"ରଦ୍ଧୀଶ୍ ଚାଲିଗଲା ।" "କ'ଣ କହୁଛ ମ !" "ହଁ, ସତକଥା । ବାସ୍... ।" ସଙ୍ଗେ ସଙ୍ଗେ ପ୍ୟାଣ୍ଟସାର୍ଟ ପିନ୍ଧି ଲଥାଙ୍ଗ ବାହାରୁ ବାହାରୁ ସ୍କୁଲ୍‌କୁ ଫୋନ୍ କରି କହିଦେଲି – "ଦିଦି ! ମୁଁ ଟିକେ ବିଳମ୍ବରେ ଆସିବି ।" ଘଟଣାଟା ଜଣାଇ ଦେଇ ଫୋନ୍‌ଟି କାଟିଦେଲି । ମୁଁ ଲଥାଙ୍ଗରେ କେମିତି ଯେ ପହଞ୍ଚିଗଲି, ଜାଣିପାରିଲିନି । ଯାଇ ଦେଖେ ତ ବାରଣ୍ଡାରେ ମୋର ପୂଜ୍ୟ ଶରତସାର୍, ରାଜ ଭାଇନା, ସୁର ଭାଇନା ଏବଂ ଜଗନ ଭାଇନାଙ୍କ ସମେତ ଗ୍ରାମର କେତେକ ବିଶିଷ୍ଟ ବ୍ୟକ୍ତି ଚୁପ୍ ଚାପ୍ ବସିଛନ୍ତି । ଦାଣ୍ଡରେ ଲୋକ ସମାଗମ । ସେତେବେଳକୁ ପୂଜ୍ୟ ହୃଷୀଭାଇନା ଗାଡ଼ି ଧରି ଭୁବନେଶ୍ୱର ଚାଲିଯାଇଥା'ନ୍ତି । ମୁଁ ସ୍କୁଲ୍‌ରୁ ଦିନ ୩ଟା ୩୦ ମିନିଟ୍‌ରେ ଲଥାଙ୍ଗରେ ପୁଣି ପହଞ୍ଚି ଯାହା ଦେଖିଲି ହତବାକ୍ ହୋଇପଡ଼ିଲି । ଯେପରି ଜଣେ ଅତି ବିଶିଷ୍ଟ ବ୍ୟକ୍ତିର ଦେହାନ୍ତ ହେଇଛି । କଟକ, ଭୁବନେଶ୍ୱର, କେନ୍ଦ୍ରାପଡ଼ା, ଜଗତ୍‌ସିଂହପୁର ଏବଂ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରୁ ବହୁତ ମାନ୍ୟଗଣ୍ୟ ବ୍ୟକ୍ତି ଲଥାଙ୍ଗ ଦାଣ୍ଡରେ ଭରପୂର । ଭଜନ, କୀର୍ତ୍ତନରେ ଗାଁ ଦାଣ୍ଡଠାରୁ ଶ୍ମଶାନ ପର୍ଯ୍ୟନ୍ତ ଦୁଲୁକି ଉଠୁଥାଏ । ଶ୍ରୀଶ୍ରୀଠାକୁରଙ୍କ ଉତ୍ସବର ଶୋଭାଯାତ୍ରା ପରି ରଦ୍ଧୀଶର ଅନ୍ତିମ ଯାତ୍ରା ଚାଲିଥାଏ । ବିଶେଷ ବିସ୍ମିତ ହେଲି ଯେ, ତା'ର ପିତୃଦେବ ଆମ ସମସ୍ତଙ୍କର ସମ୍ମାନନୀୟ ଶ୍ରଦ୍ଧେୟ ହୃଷୀକେଶ ଆଚାର୍ଯ୍ୟ (ହୃଷୀଭାଇନା)ଙ୍କର ଅସୀମ ଧୈର୍ଯ୍ୟ ଦେଖି । ଉପସ୍ଥିତ ପ୍ରତ୍ୟେକ ରଦ୍ଧୀଶର ଶରୀରକୁ ଦେଖିବା ପୂର୍ବରୁ ଚାହୁଁଥା'ନ୍ତି ହୃଷୀଭାଇନାଙ୍କୁ ଏବଂ କହୁଥା'ନ୍ତି ଏ ଲୋକ କ'ଣ ମଣିଷ ନା ଆଉ କିଛି ? ନିଜର ଏକମାତ୍ର ସୁନ୍ଦର, ସୁଯୋଗ୍ୟ ଉଚ୍ଚଶିକ୍ଷିତ, ସୁପୁତ୍ରକୁ ହରାଇ କିପରି ସୁଚାରୁରୂପେ ତା'ର ଅନ୍ତିମ ସଂସ୍କାର କରାଯିବ, ନିଜେ ଶ୍ମଶାନରେ ରହି ତତ୍ତ୍ୱାବଧାନ କରୁଥା'ନ୍ତି । ଏହି ସମୟରେ ମୋର ଠାକୁରଙ୍କର ସତ୍ୟାନୁସରଣର ଏକ ବାଣୀ ମନେପଡ଼ିଗଲା – "ଧୈର୍ଯ୍ୟଧର, ବିପଦ କଟିଯିବ ।"

ଯେଉଁ ହୃଷୀକେଶ ଆଚାର୍ଯ୍ୟ ସାରା ଓଡ଼ିଶାର ସତ୍‌ସଙ୍ଗ ଜଗତରେ ଏକ ଜଣାଶୁଣା ନାମ, ସତ୍‌ସଙ୍ଗକୁ ଯେ ପର୍ଯ୍ୟବେକ୍ଷଣ କରନ୍ତି, ତାଙ୍କର ଏ କାର୍ଯ୍ୟକୁ ବା ପର୍ଯ୍ୟବେକ୍ଷଣ କରିବ କିଏ ?

"ରଶ୍ମୀଶ" । ଆଶ୍ଚର୍ଯ୍ୟ ଏଇ ନାଁଟି । ସତ୍‌ସଙ୍ଗର ଯୁଗାଚାର୍ଯ୍ୟଙ୍କ ପ୍ରଦତ୍ତ । ଅତି ଧୀର, ଗମ୍ଭୀର, ଶାନ୍ତ, ସରଳ ଯୁବକ । ମାତ୍ର ୩୦ ବର୍ଷର ଯୁବସୁଲଭ ଉଦ୍ଦାମତା । ମୁଁ ତା' ସାଥିରେ ଖୁବ୍ କମ୍ ମିଶିଛି । ଯେତିକି ମିଶିଛି, ଅନୁଭବ କରିଛି – ଖୁବ୍ ଗମ୍ଭୀର, ଉଚ୍ଚମନା, କମ୍ କଥାବାର୍ତ୍ତା । ମୁଁ ଏବଂ ମୋର ପରିବାର ତା'ର (ରଶ୍ମୀଶର) ବାପା (ହୃଷୀଭାଇନା)ଙ୍କ ପ୍ରତି ବହୁତ ଭଲ ପାଇବା ଏବଂ ଭକ୍ତି, ଦୀର୍ଘ ପାଖାପାଖି ଦୁଇ ଦଶନ୍ଧି ଧରି; ତେଣୁ ସେଥିମଧ୍ୟରେ ରଶ୍ମୀଶକୁ ଜାଣିବା । ମୋର ଘରକୁ ଥରେ ସେ ତା'ର ବାପାଙ୍କ ନିର୍ଦ୍ଦେଶ ଆସିଥାଏ ତା'ର ବଡ଼ କକେଇଙ୍କ ସହିତ । କକେଇ ଅଛନ୍ତି ବୋଲି ସେ ଦୀର୍ଘ ୧୫ରୁ ୨୦ ମିନିଟ୍ ଛିଡ଼ାହୋଇ ରହିଲା । ଚେୟାର୍‌ରେ ବସୁ ନ ଥାଏ । ଗୁରୁଜନମାନଙ୍କୁ କିପରି ସମ୍ମାନ ଦିଆଯାଏ, ସେ ଠାକୁରଙ୍କ ଆଦର୍ଶରେ ତା'ର ବାପାଙ୍କଠାରୁ ହିଁ ଶିଖିଥିଲା । ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରର ବାର୍ଷିକ ଉତ୍ସବରେ ଯେଉଁସବୁ ଦାୟିତ୍ୱ ସମସ୍ତଙ୍କୁ ବଣ୍ଟନ କରାଯାଏ, 'ଅତିଥିଚର୍ଚ୍ଚା' ଦାୟିତ୍ୱଟି ରଶ୍ମୀଶକୁ ହିଁ ଦିଆଯାଇଥାଏ । କାରଣ 'ଅତିଥି ଦେବୋ ଭବ' । ଏ କାର୍ଯ୍ୟଟି ଅନ୍ୟ କେହି ଠିକ୍ ଭାବେ ତୁଲାଇପାରିବେ ନାହିଁ । ଏ ବର୍ଷର ବାର୍ଷିକ ଉତ୍ସବରେ ମୁଁ ଏହି ଦାୟିତ୍ୱରେ ଥାଇ ତା'ର ଅନୁପସ୍ଥିତିଟିକୁ ମର୍ମେ ମର୍ମେ ଅନୁଭବ କରିଛି । ତା'ର ସ୍ମରଣାର୍ଥେ "ରଶ୍ମୀଶ ଆଚାର୍ଯ୍ୟ ମେମୋରିଆଲ୍ ଟ୍ରଷ୍ଟ" ଗଠନ କରାଯାଇଛି । ସେ ଥିଲା ଶ୍ରୀଶ୍ରୀଠାକୁରଙ୍କ ପବିତ୍ର ପାଞ୍ଜାଧାରୀ କର୍ମୀ । ତା'ପରି ଏକ ପବିତ୍ର ଆତ୍ମା ବୋଧହୁଏ ଏ କଳୁଷିତ ପୃଥିବୀରେ ବେଶି ଦିନ ରହି କଳୁଷିତ ହୋଇଯାଉ, ଏହା ପରମପିତା ଚାହୁଁ ନ ଥିଲେ । ତେଣୁ ପରମପିତା ତାଙ୍କର ଶ୍ରୀଚରଣ କମଳରେ ଚିରଶାନ୍ତି ଦେବାପାଇଁ ତାକୁ ତାଙ୍କ ନିକଟକୁ ନେଇଯାଇଛନ୍ତି । ତେଣୁ ସେ ତା'ର ସମସ୍ତ କାର୍ଯ୍ୟ ସମ୍ପନ୍ନ ପରେ ପରମପିତାଙ୍କ ଶ୍ରୀଚରଣ କମଳକୁ ଚିରଶାନ୍ତି ଲଭିବାପାଇଁ ଚାଲିଯାଇଛି । ତେଣୁ କବିଙ୍କ କଲମ ମୁନରେ –

"ମଣିଷ ମରିବ ଦିନେ ଜନ୍ମ ହେଲେ ଦେବତା ବି ମରେ,
ସାର୍ଥକ ମରଣ ତା'ର ଯାହା ଲାଗି ଗୋଡ଼ି ମାଟି ଝୁରେ ।।"

  

ପ୍ରକୃତରେ ତା'ପାଇଁ ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରର ଏ ଗୋଡ଼ିମାଟି ଆଜି ଝୁରୁଛି । କିନ୍ତୁ ମୁଁ ଅନୁଭବ କରିପାରୁନି ଯେପରି ସେ ଭାଇନାଙ୍କୁ ବିଶେଷକରି ଏ ସତ୍‌ସଙ୍ଗ କେନ୍ଦ୍ରକୁ ଛାଡ଼ି ଚାଲିଯାଇଛି । ସେ ଯେମିତି ଏ ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରରେ ଚିର ଉପସ୍ଥିତ ଅଛି । ମୁଁ ଏବଂ ମୋର ପରିବାର ଶ୍ରୀଶ୍ରୀଠାକୁରଙ୍କୁ ଯେତିକି ଜାଣିଛୁ, କେବଳ 'ହୃଷୀଭାଇନା'ଙ୍କ ଯୋଗୁଁ । ରଦ୍ଧୀଶ ଯିବାର କିଛି ସମୟର ନିରବତା (ହୃଷୀଭାଇନାଙ୍କର) ଯେପରି ଲଥାଙ୍ଗ ସତ୍‌ସଙ୍ଗ ପ୍ରତି ଥିଲା କଳା ମୁହୂର୍ତ୍ତ । କିନ୍ତୁ ପରମପିତାଙ୍କ ଦୟା, ସେ ମହାଶୟ ଏଭଳି ମୁହୂର୍ତ୍ତରେ ସତ୍‌ସଙ୍ଗ ଜଗତକୁ 'ଇଷ୍ଟଭୃତି' ବହିଟିକୁ ପ୍ରଦାନ କରି ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରକୁ ପିଢ଼ି ପରେ ପିଢ଼ି ଆଗକୁ ମାଡ଼ି ଚାଲିବାର ପ୍ରେରଣା ବଢ଼ାଇ ଦେଇଛନ୍ତି । ଆଜି ରଦ୍ଧୀଶର ପ୍ରଥମ ଶ୍ରାଦ୍ଧ ବାର୍ଷିକୀ । ମୋର ଏବଂ ମୋର ପରିବାରର ପରମପିତାଙ୍କ ନିକଟରେ ବିନୀତ ପ୍ରାର୍ଥନା, ସେ ଭାଇନାଙ୍କୁ ଦୀର୍ଘାୟୁ କରନ୍ତୁ, ଶତାୟୁ କରନ୍ତୁ । ଏଭଳି ବିପଦରେ ମଧ୍ୟ ଯେ ଧୈର୍ଯ୍ୟହରା ନ ହୋଇ ଠାକୁରଙ୍କ ଭାବଧାରାକୁ ଆହୁରି ଆହୁରି ବଢ଼ାଇ ଦେଇ ଚାଲିଛନ୍ତି, ପରମପିତା ତାଙ୍କୁ ଓ ତାଙ୍କ ପରିବାରକୁ ଧୈର୍ଯ୍ୟଶୀଳ କରି ତୋଳନ୍ତୁ ଓ ସେହି ଆତ୍ମାର ଚିରଶାନ୍ତି ଲାଭ ହେଉ, ପରମପିତାଙ୍କ ନିକଟରେ ପ୍ରାର୍ଥନା ।

ଶ୍ରୀଶ୍ରୀଠାକୁରଙ୍କ ବାଣୀରେ –

" Men will take Care
Love is the cause of Death
Be a God's Lover
World's all the art & Smooth."







# "ରଦ୍ଧୀଶ" : ଏକ ଅନନ୍ୟ ଛାତ୍ର

**ହିମାଂଶୁ ଶେଖର ସାହୁ**

ଶିକ୍ଷକ, ଗରେଇ ଗ୍ରା.ପ. ହାଇସ୍କୁଲ୍, ଗରେଇ

ମୋର ମନେହୁଏ, ରଦ୍ଧୀଶର କୈଶୋରକୁ ମୁଁ ଯେତେ ଜାଣିଛି, ଅନ୍ୟ କେହି ସେତେ ନୁହେଁ । କାରଣ ଏଇଆ ଯେ, ତା'ର କୈଶୋର ଜାଗ୍ରତ ସମୟର ସର୍ବାଧିକ ଅଂଶ ସେ ମୋ ପାଖରେ କଟାଇଛି । ସକାଳ ୭ଟାରୁ ୯ଟା ୩୦ ପର୍ଯ୍ୟନ୍ତ ମୋ ପାଖରେ ଟିଉସନ୍, ୧୦ଟାରୁ ୪ଟା ପର୍ଯ୍ୟନ୍ତ ମୋ ପାଖରେ ବିଦ୍ୟାଳୟରେ ଏବଂ ସ୍ଥଳବିଶେଷରେ ଅପରାହ୍ଣ ୪ଟା ପରେ ମଧ୍ୟ ସେ ବିଦ୍ୟାଳୟରେ ରହୁଥିଲା । କୈଶୋରର ଚରିତ୍ର ନେଇ ତା' ମନର ଅସୁମାରୀ ପ୍ରଶ୍ନ ଓ ଜିଜ୍ଞାସା ମୋତେ ସର୍ବଦା ସତର୍କ ସଚେତନ ରହିବାକୁ ବାଧ୍ୟ କରୁଥିଲା । ଅତି ସ୍ୱଳ୍ପଭାଷୀ, ମାତ୍ର ଭାଷାର ଗାମ୍ଭୀର୍ଯ୍ୟ ତାକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଥିଲା । ଧୀର ତଥା ନମ୍ର ଭାବରେ କହୁଥିବା ତା'ର ପ୍ରତିଟି କଥା ଥିଲା ଅତ୍ୟନ୍ତ ପ୍ରଭାବଶାଳୀ, ଯାହା ସମସ୍ତଙ୍କୁ ନୀରବ ସମର୍ଥନ ଦେବାକୁ ବାଧ୍ୟ କରୁଥିଲା । ଏହି ଗୁଣ ଯୋଗୁଁ ଉଚ୍ଚ ବିଦ୍ୟାଳୟରେ ପଢୁଥିବା ତିନି ବର୍ଷଯାକ ସେ ଶ୍ରେଣୀର ମନିଟର ନିର୍ବାଚିତ ହୋଇଥିଲା । ତା'ର ନେତୃତ୍ୱ ନେବାର ପରାକାଷ୍ଠା ବିଦ୍ୟାଳୟର ପ୍ରତିଟି କାର୍ଯ୍ୟକୁ ସରସ ସୁନ୍ଦର କରିପାରିଥିଲା । ସବୁ କାମରେ ଆଗରେ ରହି ପିଲାମାନଙ୍କୁ ନେଇ କାମ କରିବା ଥିଲା ତା'ର ସ୍ୱତନ୍ତ୍ରତା । ପ୍ରଥମେ କାମର ଗୋଟିଏ ବ୍ଲୁ-ପ୍ରିଣ୍ଟ ପ୍ରସ୍ତୁତ କରି "ସାର୍, ଆମେ ଏ କାମଟି ଏହିପରି ଭାବରେ କରିବାକୁ ସ୍ଥିର କରିଛୁ, ଆପଣ ଅନୁମତି ଦେଲେ କରିବୁ ।" ଏପରି ବିନମ୍ର ଅନୁରୋଧ ଯେ, ମନା କରିବାକୁ ଯୁ ନ ଥିବ, ଅନୁମତି ନିଶ୍ଚୟ ମିଳିବ ।

  

ମନେ ପଡ଼ୁଛି ତା'ର ଦଶମ ଶ୍ରେଣୀ ବର୍ଷ ଗଣେଶ ପୂଜା କଥା । ପ୍ରାୟତଃ ଉଭୟ ପୂଜାର ପୂର୍ବଦିନ ରାତିରେ ଦଶମ ଶ୍ରେଣୀର ବାଳକମାନେ ବିଦ୍ୟାଳୟରେ ରହନ୍ତି, ସାଜସଜ୍ଜା କରନ୍ତି ଓ ଭୋଜି କରି ଖାଆନ୍ତି । ଏଥିପାଇଁ ସେମାନେ ପୃଥକ୍ ଚାନ୍ଦା ମଧ ଆଦାୟ କରିଥା'ନ୍ତି । ଯେହେତୁ ରଦ୍ଧୀଶ ଥିଲା, ଆମେ ସେବର୍ଷ ପୂର୍ବଦିନ ରାତିରେ ଫିଷ୍ଟ କରିବାକୁ ମନା କରିଦେଇଥିଲୁ । କାରଣ ସେ ପିଆଜ ରସୁଣ ବା ଆମିଷ ଖାଏ ନାହିଁ । ମାତ୍ର ସେ ନିଜେ ତା' ସାଙ୍ଗସାଥିମାନଙ୍କଠାରୁ ଟଙ୍କା ଆଦାୟ କରି ଆସି କହିଲା, "ସାର୍ ! ଆମେ ରାତିରେ ରହିବୁ ଏବଂ ଫିଷ୍ଟ କରିବୁ ।" ମୁଁ ପଚାରିଲି, "ତୁ କେଉଁଠି କ'ଣ ଖାଇବୁ ?" ଉତ୍ତର ଥିଲା - "ସାର୍ ! ମୁଁ ଘରେ ଯାଇ ଖାଇଦେଇ ଆସିବି । ମୋ କଥା ଚିନ୍ତା କରନ୍ତୁ ନାହିଁ । ମାତ୍ର ପିଲାମାନେ ରାତିରେ ରହିବେ ଏବଂ ଫିଷ୍ଟ କରି ଖାଇବେ ।" ତା' କଥା ରହିଲା । ତା' ପାଇଁ ଅରୁଦିଦିଙ୍କ ଘରେ ଭାତ ଡାଲମା ହେଲା । ଅନ୍ୟ ପିଲାମାନେ ବିଦ୍ୟାଳୟରେ ଖାଇଲେ ଓ ସେ ଦିଦିଙ୍କ ଘରୁ ଆଣି ପିଲାଙ୍କ ସହିତ ବସି ଖାଇଲା । ସାମୂହିକ କାର୍ଯ୍ୟ ତଥା ଏକତା ରକ୍ଷା କରିବାପାଇଁ ତ୍ୟାଗ କରିବାର ଏହା ଏକ ବିରଳ ଉଦାହରଣ ।

ସେ ପଢ଼ିଲା ସମୟରେ ବିଦ୍ୟାଳୟରେ ସ୍କାଉଟ୍ ମୃତପ୍ରାୟ ଅବସ୍ଥାରେ ଥିଲା । ଦିନେ ଆସି ସ୍କାଉଟ୍ ଶିକ୍ଷକ ରାଜକିଶୋର ସାହୁଙ୍କୁ କହିଲା – "ସାର୍ ! ମୁଁ ସ୍କାଉଟ୍ ନେବି ।" ସାର୍ କହିଲେ ଅତି କମ୍‌ରେ ପାଞ୍ଚଜଣ ପିଲା ଯୋଗାଡ଼ କର, ଯେଉଁମାନେ ସ୍କାଉଟ୍ ପାଇଁ କିଛି କିଛି ଖର୍ଚ୍ଚ କରିପାରିବେ । ତା' ପରଦିନ ପାଞ୍ଚଜଣ ପିଲାଙ୍କୁ ଧରି ହାଜର । ସ୍କାଉଟ୍ ଚାଲିଲା । ସ୍କାଉଟ୍ ସହିତ ଏମିତି ଜଡ଼ିଗଲା ଯେ, ତା' ପରବର୍ଷ ସ୍କାଉଟ୍‌ରେ ରାଜ୍ୟପାଳ ପୁରସ୍କାର ପାଇଲା । ଯେକୌଣସି କାମରେ ମନ ଦେଉଥିଲା, ତା'ର ଶେଷ ପର୍ଯ୍ୟନ୍ତ ସେଥିରେ ଲାଗି ରହିବା ତା'ର ବିଶେଷତ୍ୱ । ବିଦ୍ୟାଳୟର ଏନ୍.ସି.ସି. କାର୍ଯ୍ୟକ୍ରମରେ ସେ ଗ୍ରୁପ୍ ଲିଡର ଭାବରେ ମାର୍ଚ୍ଚିଂ ସୁଚାରୁରୂପେ କରୁଥିଲା । ଯାହା ଫଳରେ ଏନ୍.ସି.ସି. ଶିକ୍ଷକଙ୍କୁ ବିଶେଷ ପରିଶ୍ରମ କରିବାକୁ ପଡୁ ନ ଥିଲା ।

  

ତା'ର ମାଟ୍ରିକ୍ ପରୀକ୍ଷା ବାଲିଆ ସେଣ୍ଟରରେ ପଡ଼ିଥାଏ । ପରୀକ୍ଷା ପୂର୍ବଦିନ ଆମେ ପିଲାମାନଙ୍କ ସହ ଯାଇ ମେସ୍‌ରେ ପହଞ୍ଚିଲୁ । ତା'ର ବାପା ତଥା ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହୃଷୀକେଶ ସାର୍ ଯାଇ ପହଞ୍ଚିଲେ । ସବୁ ବ୍ୟବସ୍ଥା ଦେଖିଲେ ଓ କହିଲେ, "ହିମାଂଶୁ ! ମୁଁ ଯାଉଛି । ପରୀକ୍ଷା ଭିତରେ ମୁଁ ଆଉ ଆସିବି ନାହିଁ । କାରଣ ମୋ ପୁଅ ପରୀକ୍ଷା ଦେଉଛି । ଯାହା କିଛି ଅସୁବିଧା ସୁବିଧା ହେବ, ତୁମେ ବୁଝି ବିଚାରି ଯାହା କରିବ । ମୋ ପାଖକୁ ଖବର ଦେବ ନାହିଁ । ଦେଲେବି ମୁଁ ଆସିବି ନାହିଁ ।" ମୋ ଜୀବନରେ ଏହା ଏକ ବିଚିତ୍ର ଅନୁଭୂତି, ଯାହା ମୁଁ ଏପର୍ଯ୍ୟନ୍ତ ଭୁଲିପାରି ନାହିଁ । ସାଧାରଣତଃ ପୁଅଝିଅମାନେ ମାଟ୍ରିକ୍ ପରୀକ୍ଷା ଦେଲାବେଳେ ବାପା-ମା' ଥରେ ଯାଇ ଅନ୍ତତଃ ବୁଲି ଆସୁଥିଲେ; ମାତ୍ର ଏ କ୍ଷେତ୍ରରେ ତା'ର ଏକ ବ୍ୟତିକ୍ରମ ଥିଲା । ଫଳ ବାହାରିଲା । ଆମ ବିଦ୍ୟାଳୟର ମାତ୍ର ଗୋଟିଏ ପିଲା ଫାଷ୍ଟ ଡିଭିଜନ୍‌ରେ ପାସ କରିଥିଲା । ସେ ଥିଲା ରଦ୍ଧୀଶ । ଆମେ ସାତଜଣ ପ୍ରଥମ ଶ୍ରେଣୀ ପାଇବେ ବୋଲି ଆଶା କରିଥିଲୁ । ସେତେବେଳେ ଫଳ ନେଟ୍‌ରେ ଆସୁ ନ ଥିଲା । ମାର୍କସିଟ୍ ବିଦ୍ୟାଳୟକୁ ଆସିବା ପରେ ଆମେ ଜାଣିଲୁ ଯେ ଗଣିତ ପ୍ରଥମ ପତ୍ର ସ୍କ୍ରାଚ୍ ହୋଇଯାଇଛି । ତେଣୁ ବିଦ୍ୟାଳୟର ଫଳ ଖରାପ ହୋଇଛି । ଆମେ ଭାବିଲୁ ରଦ୍ଧୀଶର କର୍ତ୍ତବ୍ୟନିଷ୍ଠାର ଫଳସ୍ୱରୂପ ଈଶ୍ୱର ବୋଧହୁଏ କେବଳ ତାକୁ ଅନୁଗୃହୀତ କରିଛନ୍ତି । ଏମିତି କହି ବସିଲେ କଥା ସରିବନି ।

ବିଡ଼ମ୍ବନାର ବିଷୟ, ରଦ୍ଧୀଶ ଆମକୁ ଛାଡ଼ି ଚାଲିଯିବାର ପୂର୍ବଦିନ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କର ଏକ ବୈଠକରେ କଥା ପ୍ରସଙ୍ଗରେ ମୁଁ ତା'ର ଉପରୋକ୍ତ ସମସ୍ତ ବିଷୟ ଅବତାରଣା କରିଥିଲି । କିଏ ଜାଣିଥିଲା, ତା' ପରଦିନ ମୋତେ ତା'ପାଇଁ ଏକ ଶୋକ ସଭା କରିବାକୁ ପଡ଼ିବ । ତେବେ ଶୋକସଭାରେ ମୁଁ ଏତିକି କହିଲି, ତା'ର ଅବର୍ତ୍ତମାନରେ ତା' କାର୍ଯ୍ୟ ପିଲାମାନଙ୍କୁ ବିଦ୍ୟାଳୟପାଇଁ ନିଶ୍ଚିତ ଉଦ୍‌ବୁଦ୍ଧ କରିବ । ସେ ବାସ୍ତବରେ ମୋ ପାଇଁ ଜଣେ ଅନନ୍ୟ ଛାତ୍ର ।







# ଅପାସୋରା ଦୁଃଖ

ସୁ୍ରେନ୍ଦ୍ରନାଥ ଆଚାର୍ଯ୍ୟ (ଶିକ୍ଷକ)
ଲଥାଙ୍ଗ, ଜଗତ୍‌ସିଂହପୁର

ଆଜିକୁ ଠିକ୍ ଗୋଟିଏ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ସେଇ ଦୁଃଖଦ ଦିବସଟି ଥିଲା ତା ୧୮.୮.୨୦୧୪ ରିଖ ସୋମବାର ପ୍ରାତଃ ସମୟ । ପରମପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କ ଭାଦ୍ର ସତ୍‌ସଙ୍ଗ ପରିକ୍ରମାର ପ୍ରଥମ ଦିନ । ମନରେ ଅତ୍ୟନ୍ତ ଆନନ୍ଦ । ଆଗ୍ରହର ସହିତ ସତ୍‌ସଙ୍ଗରେ ଯୋଗଦେବାପାଇଁ ସତ୍‌ସଙ୍ଗ କେନ୍ଦ୍ରକୁ ଯାଉଛି । ଟୋଲ୍ ଗେଟ୍ ପାଖରେ ଶ୍ରଦ୍ଧେୟ ହୃଷୀକେଶ ଭାଇନା ଦେଖାହେଲେ । ଜୟଗୁରୁ କଲି । ସାଙ୍ଗ ହୋଇ ଯାଇ କେନ୍ଦ୍ରରେ ଶ୍ରୀଶ୍ରୀଠାକୁରଙ୍କୁ ପ୍ରଣାମ କରି ବସିଲୁ । ଭାଇନାଙ୍କ ସାନଭାଇ କ୍ଷୀରୋଦ (ଟୁକୁନା)ର ସତ୍‌ସଙ୍ଗ ପାଳି । ଗୁରୁଭାଇ ଓ ମା'ମାନେ ସତ୍‌ସଙ୍ଗରେ ଯୋଗଦେବାପାଇଁ ଆସିଛନ୍ତି । ଏକ ଅଫୁରନ୍ତ ଆନନ୍ଦ ଓ ଆଗ୍ରହ ସମସ୍ତଙ୍କ ମନରେ । ଦୀର୍ଘ ଏକମାସ ଧରି ପରମପୂଜ୍ୟପାଦ ଆଚାର୍ଯ୍ୟଦେବଙ୍କ ନିର୍ଦ୍ଦେଶିତ ଶ୍ରୀଶ୍ରୀଠାକୁରଙ୍କ ସତ୍‌ସଙ୍ଗ ସକାଳ ଓ ସନ୍ଧ୍ୟାରେ ନିୟମିତ ଭାବେ ଚାଲିବ । ପ୍ରତ୍ୟେକ ଗୁରୁଭାଇ ଓ ମା'ମାନେ ନିଷ୍ଠା ଓ ଭକ୍ତିର ସହିତ ପ୍ରତ୍ୟହ ସତ୍‌ସଙ୍ଗରେ ଯୋଗଦେଇ ପୁଣ୍ୟ ଅର୍ଜନ କରିବାର ଆଶାପୋଷଣ କରିଅଛନ୍ତି । ନିର୍ଦ୍ଧାରିତ ସମୟରେ ସତ୍‌ସଙ୍ଗ ଆରମ୍ଭ ହେଲା । ବିନତୀ ପ୍ରାର୍ଥନା, ସତ୍‌ଗ୍ରନ୍ଥ ପାଠ ଓ ଭଜନ କୀର୍ତ୍ତନ ସମାପ୍ତ ହେଲା । ତା'ପରେ ସଦାଲୋଚନା ଆରମ୍ଭ ହେଲା । ପ୍ରାରମ୍ଭିକ ଆଲୋଚନା ପରେ ଶ୍ରଦ୍ଧେୟ ହୃଷୀଭାଇନା ସଦାଲୋଚନା ଆରମ୍ଭ କରନ୍ତି । ଏକମାସ ଧରି ଭାଦ୍ରବ ସତ୍‌ସଙ୍ଗ ଠିକ୍ ଠିକ୍ ଭାବେ ନିଷ୍ଠାର ସହିତ ନିୟମିତ ସକାଳ ଓ ସନ୍ଧ୍ୟାରେ ଚାଲିବ, ଶ୍ରୀଶ୍ରୀଠାକୁରଙ୍କ ଭାବାଦର୍ଶ

ସୁଚାରୁରୂପେ ଆଲୋଚନା କରାଯିବ, ତତ୍ ସମ୍ପର୍କରେ ସୁପରାମର୍ଶ ପ୍ରଦାନ କଲେ । ସମସ୍ତ ଗୁରୁଭାଇ ଓ ମାଆମାନେ ଭାଇନାଙ୍କ ଆଲୋଚନାରେ ଖୁବ୍ ଉଦ୍‌ବୁଦ୍ଧ ଓ ପ୍ରେରଣାପୁଷ୍ଟ ହେଲେ । ସତ୍‌ସଙ୍ଗ ସରିଆସିଛି । ହଠାତ୍ ତାଙ୍କ ପାଖକୁ ଭୁବନେଶ୍ୱରରୁ ଫୋନ୍ ଆସିଲା । ସେ ଉତ୍ତର ଦେଲେ, ମୁଁ ସତ୍‌ସଙ୍ଗରେ ବସିଛି । ପୁଣି ଏକ ମିନିଟ୍ ପରେ ଫୋନ୍ ଆସିଲା । ମୁଁ ତାଙ୍କ ନିକଟରେ ବସିଥାଏ । ସେ ଫୋନ୍‌ରେ କହିଲେ କ'ଣ ହୋଇଛି ? ଫୋନ୍ କରିଥିଲେ ତାଙ୍କର ବଡ଼ଜ୍ୱାଇଁ କିଶୋରବାବୁ । ଇତ୍ୟବସରରେ ଜୟ ରାଧେ ରାଧେ ହୋଇ ବନ୍ଦେ ପୁରୁଷୋତ୍ତମ ଧ୍ୱନି ଦିଆଯାଇ ସତ୍‌ସଙ୍ଗ ସମାପ୍ତ ହେଲା । ପ୍ରସାଦ ବିତରଣ ହେଲା । ତାଙ୍କ ନିକଟରେ ପ୍ରସାଦ ପାତ୍ରରେ ଥୁଆ ହୋଇଛି । କିନ୍ତୁ ପ୍ରସାଦ ସେବନ କରିବାର ଅବକାଶ ତାଙ୍କୁ ମିଳିଲା ନାହିଁ । ଠାକୁରଙ୍କ ପ୍ରସାଦକୁ ମୁଣ୍ଡରେ ମାରି ଠାକୁରଙ୍କୁ ପ୍ରଣାମ କରି ଯିବାପାଇଁ ଉଠିପଡ଼ିଲେ । ସାନଭାଇ ନୀରୋଦ (ବାବାଜୀ)କୁ ଡାକିନେଇ ତରବର ହୋଇ ଘରକୁ ଚାଲିଗଲେ । ପରିବେଶରେ ଉପସ୍ଥିତ ସମସ୍ତ ସତ୍‌ସଙ୍ଗୀମାନଙ୍କ ମଧ୍ୟରେ ସନ୍ଦେହ ସୃଷ୍ଟି ହେଲା । ଭାଇନା କିଛି ନ କହି ମନଦୁଃଖରେ ଘରକୁ ଚାଲିଗଲେ କାହିଁକି ? ମୁଁ ମଧ ସନ୍ଦେହ ଓ ଦୁଃଖରେ ଘରକୁ ଫେରି ଘରେ ଲୁଗା, ସାର୍ଟ କାଢ଼ି ଠିଆହୋଇଛି । ହଠାତ୍ ଟୁକୁନା ପୁଅ କ୍ଷୀତି ଆସି କହିଲା ଯେ, ରଦ୍ଧୀଶ ଭାଇନା ଚାଲିଗଲେ । ତାକୁ ପଚାରିଲି, କ'ଣ କହୁଛୁ ? ସେଇ ଗୋଟିଏ ଉତ୍ତର । କାନ୍ଦି କାନ୍ଦି କହୁଛି – ରଦ୍ଧୀଶ ଭାଇନା ଆଜି ସକାଳେ ଭୁବନେଶ୍ୱରରେ ଚାଲିଗଲେ । ବଡ଼ନନା ଭୁବନେଶ୍ୱର ଗଲେଣି । ଆପଣ ଆସନ୍ତୁ । ମନଟା ଅତ୍ୟନ୍ତ ଦୁଃଖରେ ଭାରାକ୍ରାନ୍ତ ହୋଇଗଲା । ଦୁଃସମ୍ବାଦଟା ଶୁଣିବାମାତ୍ରେ ମୁଁ ସ୍ତବ୍ଧ ଓ ଚକିତ ହେଲି । ମୋର ରକ୍ତଚାପ ବୃଦ୍ଧି ହେଲା । ଆଦୌ ବିଶ୍ୱାସ କରିପାରିଲି ନାହିଁ । ଆଗରୁ ତ କୌଣସି ରୋଗରେ ସେ ଆକ୍ରାନ୍ତ ନ ଥିଲା । ଘରେ ସ୍ୱାମୀ-ସ୍ତ୍ରୀ ଦୁଃଖରେ ଭାଙ୍ଗିପଡ଼ିଲୁ । ଶେଷରେ ପ୍ରକୃତିସ୍ଥ ହେଲି ଏବଂ ଜୀବନର ଶେଷ ପରିଣତି ଯେ ମୃତ୍ୟୁ, ଏହା ସତ୍ୟ ବୋଲି ମାନିନେଲି ଏବଂ ମନେ ପଡ଼ିଗଲା କବିଙ୍କ ଗୋଟିଏ ପଦ –

  

"ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ,
ହାବୁଡ଼ିଯିବ ସେ ଆଚମ୍ବିତେ ଆସି ।"

ଭାଇନା ମୋର ବନ୍ଧୁ । ଏକା ଗ୍ରାମରେ ଘର । ତାଙ୍କର ଏକମାତ୍ର ପୁତ୍ର ରଶ୍ମୀଶ । ସ୍ନେହରେ 'ବାପୁ' ବୋଲି ଡାକନ୍ତି । ସେ ମାଇନର୍ ସ୍କୁଲରେ ପାଠ ପଢ଼ିବା ସମୟରେ ମୋର ଛାତ୍ର । ଦୁଇବର୍ଷ ମୋ ପାଖରେ ଛାତ୍ର ଜୀବନ ଅତିବାହିତ କରିଛି । ଅତ୍ୟନ୍ତ ଶାନ୍ତ, ଶିଷ୍ଟ, ଭଦ୍ର ଓ ନମ୍ର ଭାବେ ଶିକ୍ଷକମାନଙ୍କ ପାଖରେ ଆଦରଣୀୟ । ସାଙ୍ଗସାଥିମାନଙ୍କ ଭିତରେ ତା'ର ଅତ୍ୟନ୍ତ ଘନିଷ୍ଠତା । ପାଠ ପଢ଼ାଇବା ସମୟରେ ସ୍ୱତନ୍ତ୍ର ନଜର ତା' ଉପରେ ଥାଏ । କାରଣ ସେ ଜଣେ ଭଲ ପାଠପଢୁଆ ମେଧାବୀ ଛାତ୍ର ବୋଲି । ପ୍ରଶ୍ନୋତ୍ତର ଲେଖାରେ ସାମାନ୍ୟ ତ୍ରୁଟି ଥାଏ । ସବୁବେଳେ ସତର୍କ କରିଦିଏ । ତାଗିଦ୍ ମଧ୍ୟ କରେ ଯେ, ଏ ତ୍ରୁଟି ସାମାନ୍ୟ ହେଲେ ମଧ୍ୟ ଉଚ୍ଚଶିକ୍ଷା କ୍ଷେତ୍ରରେ ଅସୁବିଧାର ସମ୍ମୁଖୀନ ହେବୁ । ଭବିଷ୍ୟତରେ ଏହାର ପୁନରାବୃତ୍ତି ଯେପରି ନ ହେବାପାଇଁ ପରାମର୍ଶ ଦିଏ । ନମ୍ରତାର ସହିତ ଉପଦେଶକୁ ମାନିନିଏ । ଦେଖିଲି ହାଇସ୍କୁଲ୍ ଓ କଲେଜରେ କୃତିତ୍ୱର ସହିତ ପ୍ରଥମ ଶ୍ରେଣୀରେ ସେ ଉତ୍ତୀର୍ଣ୍ଣ ହୁଏ । ସୁବକ୍ତା ମଧ୍ୟ, ବିଦ୍ୟାଳୟରେ ସ୍ୱାଧୀନତା ଦିବସ, ଗୁରୁଦିବସ ଇତ୍ୟାଦି ସଭାମାନଙ୍କରେ ସୁନ୍ଦର ଭାଷଣ ଦିଏ । ସ୍ନାତକୋତ୍ତର ଶିକ୍ଷା ସାରି ଓ.ୟୁ.ଏ.ଟି.ରେ ଚାକିରି ମଧ୍ୟ କରେ । ଶୁଣି ଖୁବ୍ ଖୁସି ହେଲି । ଗ୍ରାମର ଗୌରବ । ଘରକୁ ଆସେ, ଦେଖାହେଲେ ପ୍ରଣାମ କରେ ମୁଣ୍ଡ ନୁଆଁଇ । ମୁଁ ପ୍ରେରଣା ଦିଏ, ରଶ୍ମୀଶ ! ଓ.ୟୁ.ଏ.ଟି.ରେ ଜଣେ ଭଲ ପ୍ରଫେସର ଯେପରି ହେବୁ । ମୁରୁକି ହସିଦିଏ । ବ୍ୟବହାର ଅତ୍ୟନ୍ତ ମାର୍ଜିତ ଗୁରୁଜନମାନଙ୍କ ପ୍ରତି । ସତ୍‌ସଙ୍ଗୀ ହିସାବରେ ସତ୍‌ସଙ୍ଗ ପ୍ରତି ମଧ୍ୟ ଖୁବ୍ ସଶ୍ରଦ୍ଧ । ସତ୍‌ସଙ୍ଗରେ ସୁନ୍ଦର ଭାବେ ସଦାଲୋଚନା କରିପାରେ । ବିଜ୍ଞାନ ଛାତ୍ର ହିସାବରେ ବୈଜ୍ଞାନିକ ଦୃଷ୍ଟିକୋଣରୁ ଆଲୋଚନା କରେ ଏବଂ ବିଭିନ୍ନ ପତ୍ରପତ୍ରିକାରେ ତା'ର ଉଚ୍ଚକୋଟୀର ଲେଖାସବୁ ମଧ୍ୟ ପ୍ରକାଶ ପାଇଛି । ମତେ ଥରେ ପରାମର୍ଶ ଦେଲା ଯେ, ସାର୍ ! ଆପଣ ପ୍ରତ୍ୟହ ସାଲାଡ୍ ଖାଇବେ । କାରଣ ଏହା ବାର୍ଦ୍ଧକ୍ୟକୁ ନିରୋଧ କରେ । ଭାରି

ଖୁସି ହେଲି ତା'ର ଶ୍ରଦ୍ଧା ଓ ସମ୍ମାନରେ । ତା'ପରେ ଇତ୍ୟବସରରେ ତା'ର ବିବାହ ସମ୍ପନ୍ନ ହୋଇଗଲା ବହୁ ଆନନ୍ଦ ଉତ୍ସବରେ । ଆମ ଗ୍ରାମର ସତ୍‌ସଙ୍ଗର, ସତ୍‌ସଙ୍ଗ କେନ୍ଦ୍ରର ଏକ asset ଥିଲା । ଶ୍ରୀଶ୍ରୀଠାକୁରଙ୍କ ପବିତ୍ର ଯାଜକ ପାଞ୍ଜା ପ୍ରାପ୍ତ ମଧ୍ୟ ହୋଇଥିଲା । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଭିନ୍ନ । ପରମାୟୁ ସ୍ୱଳ୍ପ । ସ୍ୱଳ୍ପ ସମୟ ବୈବାହିକ ଜୀବନ ପରେ ଠାକୁରଙ୍କ ପାଖକୁ ସେ ଚାଲିଗଲା । ଏହା ପ୍ରାୟ ଶ୍ରୀଶ୍ରୀଠାକୁରଙ୍କ ଇଚ୍ଛା । ସବୁଦିନପାଇଁ ଆମ ପାଖରେ ଅଭୁଲା ହୋଇଗଲା । ସବୁବେଳେ ତା' କଥା, ତା' ରୂପ ମନେ ପଡୁଛି । ମୋର କାହିଁକି, ସମସ୍ତ ସତ୍‌ସଙ୍ଗିମାନଙ୍କର, ଆମ ଗ୍ରାମର ସମସ୍ତ ଲୋକଙ୍କର । କବିଙ୍କ ଭାଷାରେ –

"ମଣିଷ ମରିବ ଦିନେ ଜନ୍ମ ହେଲେ ଦେବତା ବି ମରେ,
ସାର୍ଥକ ଜୀବନ ତା'ର ଯା'ର ଲାଗି ଗୋଡ଼ି ମାଟି ଝୁରେ ।"

ମଲାଗଲା ଦୁନିଆରେ ଆଜି ଚାଲିଗଲେ । ଆମକୁ ମଧ୍ୟ ଦିନେ ଏ ସଂସାର ଛାଡ଼ି ଚାଲିଯିବାକୁ ହେବ । ପରମପିତା ପରମ ଦୟାଲ୍ ଶ୍ରୀଶ୍ରୀଠାକୁରଙ୍କ ନିକଟରେ ପ୍ରାର୍ଥନା - ତା'ର ଆତ୍ମା ଚିରଶାନ୍ତି ଲାଭ କରୁ ଏବଂ ତା'ର ଶୋକସନ୍ତପ୍ତ ପିତା, ମାତାଙ୍କୁ ଠାକୁର ଅସୀମ ଧୈର୍ଯ୍ୟ ଦିଅନ୍ତୁ । ବନ୍ଦେ ପୁରୁଷୋତମମ୍ ॥



  

# ବାହୁନୁଛନ୍ତି ନନା ଓ ବୋଉ : ସୁମରୁଛି ଜନ୍ମମାଟି ଲଥାଙ୍ଗ

ସୁଧାଂଶୁ ଶେଖର ଆଚାର୍ଯ୍ୟ (ଜଗନ କକେଇ)
ଲଥାଙ୍ଗ, ଜଗତ୍‌ସିଂହପୁର

"ରଦ୍ଧୀଶ" ଶ୍ରୀଶ୍ରୀବଡ଼ଦା'ଙ୍କ ପ୍ରଦତ୍ତ ନାମ । ଯାହାକି ସଂସାରରେ ଏକ ବିରଳ ନାମ । ସେହି ରଦ୍ଧୀଶର ପିତା ହୃଷୀକେଶ ଓ ମାତା ମାଳତୀ ଆଚାର୍ଯ୍ୟଙ୍କ ତୃତୀୟ ସନ୍ତାନ ଭାବେ ୧୯୮୩ ମସିହା ନଭେମ୍ବର ୨୦ ତାରିଖରେ ଜନ୍ମଗ୍ରହଣ କରିଥିଲା । ଗରେଇ ଉ.ପ୍ରା. ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷା ଓ ଗରେଇ ଗ୍ରା.ପ. ହାଇସ୍କୁଲ୍‌ରୁ ମାଟ୍ରିକ୍ ପାସ୍ ପରେ ତିର୍ତ୍ତୋଲ ମହାବିଦ୍ୟାଳୟରୁ ସ୍ନାତକ ଡିଗ୍ରୀ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲା ଓ ପରବର୍ତ୍ତୀ ସମୟରେ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟରେ ଡେମୋନ୍‌ଷ୍ଟ୍ରେଟର ଭାବେ ଚାକିରି ପାଇଥିଲା । ସ୍ୱଳ୍ପଦିନର ଚାକିରି କାଳରେ ସେ ଉକ୍ତ ମହାବିଦ୍ୟାଳୟର ଛାତ୍ରମାନଙ୍କଠାରୁ ଆରମ୍ଭ କରି ଅଧ୍ୟାପକ, ଅଧ୍ୟକ୍ଷ, ନିର୍ଦ୍ଦେଶକ ଓ କୁଳପତି ସମସ୍ତଙ୍କ ଅତି ପ୍ରିୟ ଓ ଶ୍ରଦ୍ଧାଭାଜନ ହୋଇପାରିଥିଲା ।

ରଦ୍ଧୀଶ ଗୋଟିଏ ବ୍ୟକ୍ତି, ଅଥଚ ଅନେକ ବିବିଧ ବର୍ଣ୍ଣାଳୀରେ ପରିପୂର୍ଣ୍ଣ ଜୀବନ । ତା'ର ବ୍ୟକ୍ତିତ୍ୱ ଏକଦିଗମୁଖୀ ନୁହେଁ, ବହୁଦିଗ ପ୍ରସାରୀ । ନିଜର କର୍ତ୍ତବ୍ୟନିଷ୍ଠା ସହ ଅସମ୍ଭବ ସହିଷ୍ଣୁତା, ଅସୀମ ଧୈର୍ଯ୍ୟ ଓ ସ୍ୱାଭିମାନ ଯୋଗୁଁ ସେ ଆଜି ନିଜ ଜନ୍ମମାଟି ସହ କର୍ମଭୂମିରେ ବି ଅବିସ୍ମରଣୀୟ ଚରିତ୍ର ହୋଇଯାଇଛି । "ସତ୍‌ସଙ୍ଗ" ଜଗତରେ ତା'ର ସ୍ଥାନ ମଧ୍ୟ ଅପୂରଣୀୟ । ସେ ମୋ ସାନପୁଅ ଦୁଇଜଣଙ୍କର ସମବୟସ୍କ ଅଟେ । ସବୁ ପିଲାଙ୍କ ଭଳି ତା'ର ବାଲ୍ୟ ଚପଳତା ନ ଥିଲା; ସେ କେବେ ଗ୍ରାମଦାଣ୍ଡରେ ପିଲାଙ୍କ ସହ ମିଶି କ୍ରିକେଟ୍ ଖେଳୁ ନ

ଥିଲା କି କେବେ ଦୁଷ୍ଟାମି ମଧ୍ୟ କରୁ ନ ଥିଲା । କିନ୍ତୁ ସେ ଅତିମାତ୍ରାରେ ଗ୍ରାମପ୍ରେମୀ ତଥା ଜାତିପ୍ରେମୀ ଥିଲା । ଯାହାକି ତାଙ୍କର ବଂଶ ପରମ୍ପରା । ଦୀର୍ଘ ୮ ବର୍ଷ ହେବ, ମୁଁ ପ୍ରତ୍ୟହ ସକାଳ ୭ଟାବେଳକୁ ତାଙ୍କ ଘରକୁ ଯାଏ । ଯଦି ବା କେବେ ବିଳମ୍ବ ହୁଏ, ତା'ର ନନା ତଥା ମୋର ହୃଷୀଭାଇନା ମୋତେ ଫୋନ୍‌ରେ ଡାକନ୍ତି – "ଆସୁନୁ କାହିଁକି ଡେରି କରୁଛୁ ।" ସେ କ୍ୱଚିତ୍ ଗ୍ରାମକୁ ଆସେ ଓ କେବେ ଆମେ ଚେୟାର୍‌ରେ ବସିଥିବା ସମୟରେ ଚେୟାର୍‌ରେ ନ ବସି ତଳେ ବଡ଼ ଆନନ୍ଦରେ ଚେକାମାଡ଼ି ବସିପଡ଼େ । ତା' ଭଳି ନମ୍ର, ଭଦ୍ର ପିଲା ଏଯୁଗରେ କ୍ୱଚିତ୍ ଦେଖିବାକୁ ମିଳନ୍ତି । ସେ ଅନେକ ଥର ଅନେକ ସମୟରେ ମୋ ସହ ଗ୍ରାମର ବ୍ରାହ୍ମଣ ପିଲାଙ୍କ ଭବିଷ୍ୟତ ତଥା 'ଶେଖରେଶ୍ୱର ମହାଦେବ'ଙ୍କ ମନ୍ଦିରର ଉନ୍ନତି ବିଷୟରେ ଆଲୋଚନା କରେ । କିନ୍ତୁ ସେ ଈର୍ଷାପର ନ ଥିଲା କି କାହାପ୍ରତି ବିଦ୍ୱେଷଭାବ ନ ଥିଲା । ତା'ର ଗୁଣ ଯେ ଅଶେଷ, ତାହା ବର୍ଣ୍ଣନା କରିବା ମୋ ପକ୍ଷରେ ଅସମ୍ଭବ ଅଟେ ।

ଏକ ସଫଳ ପରିପୂର୍ଣ୍ଣ ଜୀବନ ବିତାଇବା ପରେ ୨୦୧୪ ଅଗଷ୍ଟ ୧୮ ତାରିଖ ପ୍ରାତଃକାଳରେ ନିଜର ଆତ୍ମୀୟ, ଗ୍ରାମବାସୀ ତଥା ସହକର୍ମୀମାନଙ୍କୁ ଛାଡ଼ି ରବୀଶ ସ୍ୱର୍ଗଧାମକୁ ଚାଲିଯାଇଛି । ତା'ର ଅବର୍ତ୍ତମାନରେ ତା'ର ନନା-ବୋଉଙ୍କୁ ପ୍ରଭୁ ଶେଖରେଶ୍ୱର ମହାଦେବ ବଞ୍ଚିବାପାଇଁ ଶକ୍ତି ଓ ସାମର୍ଥ୍ୟ ଦିଅନ୍ତୁ । ଏହାହିଁ ମୋର ତଥା ଲଥାଙ୍ଗ ଗ୍ରାମବାସୀଙ୍କର ପ୍ରାର୍ଥନା ।



  

# ସ୍ମୃତିରୁ ଚେନାଏ

ପ୍ରମୋଦ କୁମାର ଆଚାର୍ଯ୍ୟ
କୋଠମୂଳ, ଜଗତ୍‌ସିଂହପୁର

ପ୍ରକୃତିର ସ୍ୱାଭାବିକ ପରିଣାମରେ ଜୀବଦେହର କୌଣସି ନା କୌଣସି ସମୟରେ ଅବସାନ ଘଟେ; ତା' ଚିରସ୍ଥାୟୀ ନୁହେଁ, ନଶ୍ୱର । ଇଷ୍ଟାନୁଗ ଚଳନର ମଧ୍ୟଦେଇ ଦେହର ଅକାଳ ନାଶକୁ ହୁଏତ ରୋଧ କରିବା ସମ୍ଭବ; କିନ୍ତୁ ଏକ ଜନ୍ମର ନିର୍ଦ୍ଦିଷ୍ଟ କର୍ମସାଧନ ସମାପ୍ତ ହେଲେ, ଦେହଟି ତ୍ୟାଗ କରି ଜନ୍ମାନ୍ତର ଉଦ୍ଦେଶ୍ୟରେ ଯାତ୍ରା କରିବାକୁ ହୁଏ । ସେଇ ସ୍ୱାଭାବିକ ପ୍ରାକୃତିକ ପରିଣାମର ପଥ ସ୍ୱୟଂ ସୃଷ୍ଟିକର୍ତ୍ତା ବି ରୁଦ୍ଧ କରନ୍ତି ନାହିଁ । କାରଣ ତାହା ତାଙ୍କର ଅଭିପ୍ରେତ ନୁହେଁ ।

ଚାହୁଁ ଚାହୁଁ ବର୍ଷଟିଏ ବିତିଯିବାକୁ ବସିଛି । କାଲି ପରି ଲାଗୁଛି । ତା ୧୮.୮.୨୦୧୪ ରିଖ ସକାଳ ୯ଟାରେ ବିଭୁତିଠାରୁ ଫୋନ୍ ପାଇଲି – "ଅଜା ! ଋତ୍ୱୀଶ ଚାଲିଗଲା ବୋଲି ଶୁଣୁଛି । ବିଶ୍ୱାସ କରିପାରୁନି । ଆପଣ ଟିକେ ଠିକ୍ ଭାବରେ ବୁଝିବେ ।" ଏପରି ଏକ ଦୁଃସମ୍ବାଦ ପାଇ ହଠାତ୍ ସ୍ତବ୍ଧ ହୋଇଗଲି କିଛି ସମୟ । ଜଣାଶୁଣା କିଛି ବ୍ୟକ୍ତିଙ୍କଠାରୁ ଫୋନ୍ କଲ୍ ମାଧ୍ୟମରେ ବୁଝିବାକୁ ଚେଷ୍ଟା କଲି । ସମସ୍ତେ ଏ ଦୁଃସମ୍ବାଦ ପାଇଥିଲେ ମଧ୍ୟ କେହି ଯେପରି ବିଶ୍ୱାସ କରିପାରୁ ନ ଥିଲେ ବୋଲି ଜାଣିଲି । ନିଚ୍ଛକ ସତ୍ୟ କେବେ ଲୁଚିପାରିଲା ନାହିଁ । ଶେଷକୁ ବିଶ୍ୱାସ କରିବାକୁ ପଡ଼ିଲା । ଋତ୍ୱୀଶଙ୍କର ଆକସ୍ମିକ ମୃତ୍ୟୁ ହୋଇଛି ତାଙ୍କ ଚାକିରି କ୍ଷେତ୍ର ଓ.ୟୁ.ଏ.ଟି, ଭୁବନେଶ୍ୱର ଷ୍ଟାଫ୍ କ୍ୱାର୍ଟର୍ସରେ । ମୃତଦେହ ଘରେ ପହଞ୍ଚିବା ପରେ ଅନ୍ତିମ ସଂସ୍କାର ପୂର୍ବର ହୃଦୟ ବିଦାରକ ଦୃଶ୍ୟ ସମସ୍ତଙ୍କୁ ଏକରକମ ସ୍ଥାଣୁ କରି ଦେଇଥିଲା ।





ହେ ମୋର ପୂଜନୀୟ ଶିକ୍ଷକ ! ଆପଣଙ୍କୁ ବହୁତ କାମ ଦେଲିଣି । ମୋ ପୁଅ ଅତି ସରଳ ପିଲାଟିଏ । ତାକୁ ମୁଁ ଆପଣଙ୍କ ହାତରେ ଅର୍ପଣ କରୁଛି । ଆପଣ ତାକୁ ମଣିଷ ପରି ମଣିଷଟିଏ କରି ଗଢ଼ିବେ, ରହୁଛି ।”

ଉପରୋକ୍ତ ପତ୍ର ସହିତ ରବୀଶଙ୍କର ଚଳନ ଚରିତ୍ରର ବହୁ ସାମଞ୍ଜସ୍ୟ ଦେଖିବାକୁ ମିଳୁଥିଲା । ମଣିଷ ପରି ମଣିଷଟିଏ ହେବାକୁ ଯାଉଥିବା ରବୀଶଙ୍କୁ ମାତ୍ର ଏକତିରିଶ ବର୍ଷ ବୟସରେ ପରମପିତା କାହିଁକି ହୃଷୀଦା’ଙ୍କ ପରିବାର ତଥା ପରିବେଶଠାରୁ ଛଡ଼ାଇ ନେଲେ, କେବଳ ତାଙ୍କୁହିଁ ଜଣା । ପରମପିତା ତାଙ୍କ ପରିବାରର ସମସ୍ତଙ୍କୁ ଏହି ଦାରୁଣ ଦୁଃଖ ସହ୍ୟ କରିବାର ଧୈର୍ଯ୍ୟ ଦିଅନ୍ତୁ ।

ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ମୋର ଗୁରୁଦେବ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ଶ୍ରୀପାଦପଦ୍ମରେ ପ୍ରାର୍ଥନା ଜଣାଏ, ରବୀଶଙ୍କର ବିଦେହୀ ଅମ୍ଳାନ ଆତ୍ମା ତାଙ୍କ ରାତୁଳ ଚରଣରେ ଚିରଶାନ୍ତି ଲାଭ କରୁ ।

●





# ଅତୀତ ସ୍ମୃତିରୁ ଚେନାଏ

**ଦୀପକ ରଞ୍ଜନ ରାଜଗୁରୁ**
ଲଥାଙ୍ଗ, ଜଗତ୍‌ସିଂହପୁର

ସେଦିନ ଥିଲା ପହିଲା ଭାଦ୍ରବ, ତା ୧୮.୮.୨୦୧୪ ରିଖ ସୋମବାର । ପରମ ପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କର ୧୨୭ତମ ଆବିର୍ଭାବ ମାସ ଉପଲକ୍ଷେ ମାସସାରା ସତ୍‌ସଙ୍ଗର ପ୍ରଥମ ସତ୍‌ସଙ୍ଗ । ସତ୍‌ସଙ୍ଗ ଥାଏ ସତ୍‌ସଙ୍ଗ କେନ୍ଦ୍ର, ଲଥାଙ୍ଗ ପରିସରରେ; ସତ୍‌ସଙ୍ଗ ପ୍ରଦାନ କରୁଥା'ନ୍ତି ରବୀଶର ବଡ଼ କକେଇ କ୍ଷୀରୋଦ କୁମାର ଆଚାର୍ଯ୍ୟ । ସମୟ ସକାଳ ୭ ଘଟିକା । ପହିଲା ଭାଦ୍ରବ ସତ୍‌ସଙ୍ଗ ଉପଲକ୍ଷେ ସମସ୍ତେ ପ୍ରାୟ ସକାଳୁ ନିତ୍ୟକର୍ମ ସାରି ଉତ୍ସାହର ସହିତ ଆସିଥା'ନ୍ତି ସତ୍‌ସଙ୍ଗକୁ । ସତ୍‌ସଙ୍ଗ ଆରମ୍ଭ ହୁଏ ଠିକ୍ ୭ଟା ସମୟରେ । ପ୍ରାର୍ଥନା, ଭଜନ, କୀର୍ତ୍ତନ ପରେ ଭାଇନା (ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ, ସ.ପ୍ର.ର.) ଆଲୋଚନା କରୁଥା'ନ୍ତି । ସମସ୍ତେ ସେହି ଅମୀୟ ରସାମୃତ ପ୍ରାଣଭରି ପାନ କରୁଥା'ନ୍ତି । ଠିକ୍ ଅଳ୍ପ କିଛି ସମୟ ବ୍ୟବଧାନରେ ଏକ ଫୋନ୍ କଲ୍ ଆସେ ଭାଇନାଙ୍କ ପାଖକୁ । ଭାଇନା ସେହି କଲ୍‌କୁ କାଟି ଦିଅନ୍ତି । ସତ୍‌ସଙ୍ଗ ସରିବା ପରେ ଫୋନ୍ କଲ୍ ପାଇ ଭାଇନା ବିବ୍ରତ ହୋଇ ତାଙ୍କ ସାନଭାଇକୁ ଧରି କାହାରିକୁ କିଛି ନ କହି ସତ୍‌ସଙ୍ଗ କେନ୍ଦ୍ରରୁ ଘରକୁ ଚାଲିଯାଆନ୍ତି । ପ୍ରସାଦ ବିତରଣ ପରେ ମୁଁ ଯାଇ ଭାଇନାଙ୍କ ପାଖରେ ପହଞ୍ଚେ । ଭାଇନା କାନ୍ଦି କାନ୍ଦି କୁହନ୍ତି – "ରବୀଶର କ'ଣ ହୋଇଯାଇଛି – ମୋତେ ଭୁବନେଶ୍ୱର ଯିବାକୁ ପଡ଼ିବ ।" ମୁଁ ଭାବେ, ରବୀଶର ଦେହ କିଛି ଖରାପ ଅଛି, ଠାକୁରଙ୍କ ଦୟାରୁ ଭଲ ହୋଇଯିବ । ବିଧିର ବିଧାନ କିନ୍ତୁ ଅଲଗା ଥିଲା । ଏହାର ଠିକ୍ କିଛି ସମୟ ପରେ ରବୀଶର ବଡ଼କକେଇ ଆସି ମୋତେ ଡାକି କୁହନ୍ତି – "ରବୀଶ

ଆଉ ନାହିଁ ।" ଏହି ପଦଟିଏ କଥା ମୁଁ ଏପର୍ଯ୍ୟନ୍ତ ଭୁଲିପାରିନି । ମୁଁ କ'ଣ କରିବି କିଛିବି ଚିନ୍ତା କରିପାରିଲି ନାହିଁ । ମୁଁ ଘରେ ମୋର ବୋଉ ଓ ନନାଙ୍କୁ ଏହି ଦୁଃସମ୍ବାଦ ଦେଇ ଭାଇନାଙ୍କ ଘରଆଡ଼କୁ ଚାଲିଗଲି । ସତେ ଯେପରି ଗାଁର ପିଲାଛୁଆଙ୍କଠାରୁ ଆରମ୍ଭ କରି ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ଅବାକ୍ । କ'ଣସବୁ ଘଟିଗଲା ! ଯେଉଁ ପିଲା ଦିନେ ଆମ ଆଖି ଆଗରେ ଏହି ଦାଣ୍ଡରେ ଖେଳୁଥିଲା, ବହିବସ୍ତାନି ଧରି ସ୍କୁଲ୍‌କୁ ଯାଉଥିଲା, ଏହି ନିକଟରେ ତା'ର ବିବାହ କାର୍ଯ୍ୟ ହୋଇଛି, ବୟସ ତା'ର ହୋଇନି, ସେ ପୁଣି ଆରପାରିରେ ! କେହିବି ଏକଥାକୁ ବିଶ୍ୱାସ କରିପାରୁ ନ ଥା'ନ୍ତି । ଆସ୍ତେ ଆସ୍ତେ ଏହି ଖବର ସବୁଆଡ଼େ ପ୍ରଘଟ ହୋଇଯାଏ ଏବଂ ତାକୁ ଭଲ ପାଉଥିବା ଲୋକମାନଙ୍କ ସଂଖ୍ୟା ତାଙ୍କ ଘର ଆଗରେ ବଢ଼ି ବଢ଼ି ଚାଲିଥାଏ । ସେଦିନ ଶ୍ମଶାନରେ ତା'ର ଶବସଂସ୍କାର ସମୟରେ ଶହ ଶହ ଲୋକ ଉପସ୍ଥିତ ଥା'ନ୍ତି ଏବଂ ସମସ୍ତଙ୍କ ଆଖିରେ ନୀରଧାର ଅନବରତ ବହି ଚାଲିଥାଏ । ପ୍ରକୃତରେ ଯେତେବେଳେ ଶିଶୁଟିଏ ଜନ୍ମଲାଭ କରେ, ସମସ୍ତେ ହସନ୍ତି; କିନ୍ତୁ ସେହି ଶିଶୁଟି କାନ୍ଦେ । ମାତ୍ର ଆମର ଏପରି ଆଚରଣ ଓ କର୍ମ ହେବା ଦରକାର, ଯେପରି ଆମେ ଚାଲିଗଲେ ସମସ୍ତେ କାନ୍ଦିବେ, କିନ୍ତୁ ମୁଁ ହସୁଥିବି । ରଦ୍ଧୀଶର କ୍ଷେତ୍ରରେ ତାହାହିଁ ହୋଇଛି । ରଦ୍ଧୀଶର ହିସାବରେ ମୁଁ କକେଇ ହେବି । ହେଲେ ମୋ ସାଙ୍ଗରେ ସେ ଭଲଭାବେ ମିଶେ, ବିଶେଷ କରି ସତ୍‌ସଙ୍ଗ ବ୍ୟାପାରରେ । ମଝିରେ ମଝିରେ ଭୁବନେଶ୍ୱରରୁ ଫୋନ୍ କରି ସତ୍‌ସଙ୍ଗ କେନ୍ଦ୍ରରେ କ'ଣ ହେଉଛି, କାମ କ'ଣ ଚାଲିଛି, ବିଭିନ୍ନ ବିଷୟରେ ପଚାରି ବୁଝେ । ପୂଜନୀୟ ବିଙ୍କିବାବୁଙ୍କ ବିବାହ ଉତ୍ସବରେ ଯୋଗଦେବାପାଇଁ କେନ୍ଦ୍ର ତରଫରୁ ମୁଁ ରଦ୍ଧୀଶ, ଟୁଟୁ ଓ ପୁପୁ ଚାରିଜଣ ଆଶ୍ରମ ଯାଉ । ଏହି ଚାରିଦିନ ରହଣି ଭିତରେ ମୁଁ ତା' ସହିତ ଭଲଭାବେ ମିଶେ । ଏହି ସମୟରେ ଆମେ ଚାରିଜଣ ଏଭଳି ମଜା କରୁ, ତାହା ଏବେବି ମନେପଡ଼େ । ଯେଉଁଦିନ ସେ ପବିତ୍ର ଯାଜକ ପାଞ୍ଜା ପ୍ରାପ୍ତ ହୁଏ, ସେଦିନ ଆମେବି ଆଶ୍ରମରେ ଥାଉ । ସେ ଆସି ମୁଣ୍ଡଲଗାଇ ପ୍ରଣାମ କରେ । ମୁଁ ଖୁସିହୁଏ ତା'ର ଏବଂ ଟୁଟୁର ପବିତ୍ର ପାଞ୍ଜା ପ୍ରାପ୍ତିକୁ ନେଇ ।

ତା'ର ପାଞ୍ଜା ପ୍ରାପ୍ତି ପରେ ମଧ୍ୟ ସତ୍‌ସଙ୍ଗକୁ ଗଲେ ତାକୁ ମୁଁ ଯେତେଥର କହିଛି ଆଗରେ ବସିବାପାଇଁ, ସେ କେବେବି ବସି ନାହିଁ । ତାକୁ ବସିବାକୁ କହିଲେ ସେ କୁହେ – "କକେଇ ଇତ୍ୟାଦି ଗୁରୁଜନମାନେ ଆଗରେ ବସିବା ଦରକାର; ଆମେ କର୍ମୀ ହେଲେ କ'ଣ ହେଲା ? ତା'ର ଗୁରୁଜନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖି ମୋତେ ଭଲ ଲାଗେ । ଆମ ସତ୍‌ସଙ୍ଗ କେନ୍ଦ୍ରର ସମସ୍ତ ଉତ୍ସବରେ ସେ ବିଭିନ୍ନ ଦାୟିତ୍ୱରେ ରୁହେ । ସେ ଏଭଳି ଭାବେ ନୀରବରେ ରହି ସମସ୍ତ କାର୍ଯ୍ୟ ଅତିସୁନ୍ଦର ଭାବେ ସମାପନ କରେ, ତାହା ନ ଦେଖିଲେ ବିଶ୍ୱାସ କରିହୁଏନା । ମୋର ବୋଉ ତା'ର ମା' ହିସାବ ହେବ । ଯେତେବେଳେ ବି ଆସିଲେ ବୋଉଙ୍କୁ ଦେଖିଲେ, ବୋଉଙ୍କ ସାଙ୍ଗରେ ନକଲ ହୁଏ ଓ ମଜ୍ଜା କରେ । ତା'ର ସେହି ମୁହଁ ଏବେବି ମନେପଡ଼େ । ଏବେବି ମୁଁ ଭାବେ ସତେଯେପରି ସେ ଭୁବନେଶ୍ୱରରେ ଅଛି, ଗାଁକୁ ଆସିବ । ତା' କିନ୍ତୁ ସତ ନୁହେଁ । ପରମପିତା ତାକୁ ତାଙ୍କ ପାଖକୁ ନେଇଯାଇଛନ୍ତି । ୨୦୧୫ ନବବର୍ଷ ଉତ୍ସବରେ ମୁଁ ଭାଇନା ଏବଂ ତା'ର ସାନ କକେଇ (ନୀରଦ ଆଚାର୍ଯ୍ୟ) ଆଶ୍ରମ ଯାଇଥିଲୁ । ପୂଜନୀୟ ବିଙ୍କିଦା'ଙ୍କ ପାଖରେ ଭାଇନା ରଦ୍ଧୀଶ ଚାଲିଯିବାର କଥା ନିବେଦନ କରନ୍ତି । ପୂଜନୀୟ ବିଙ୍କିଦା କୁହନ୍ତି – "ମୁଁ ତାହା ଜାଣେ, ପରମପିତା ତାଙ୍କୁ ତାଙ୍କ ପାଖକୁ ନେଇଯାଇଛନ୍ତି ।" ଏହା ତାଙ୍କର ଉକ୍ତି ଥିଲା ।

ଆଜିର ଦିବସରେ ମୁଁ ପରମପିତାଙ୍କ ପାଖରେ ପ୍ରାର୍ଥନା କରେ, ତା'ର ଆତ୍ମା ପରମାତ୍ମାଙ୍କ ପାଖରେ ମହା ଆନନ୍ଦରେ ଥାଉ ।







# ସ୍ମୃତି : ବଡ଼ ବେଦନାଦାୟକ

**ସତ୍ୟଜିତ୍ ଶତପଥୀ**
ଲଥାଙ୍ଗ, ଜଗତ୍‌ସିଂହପୁର

ଏହି ସଂସାରରେ ପ୍ରତ୍ୟେକ ମନୁଷ୍ୟଙ୍କ ଜୀବନରେ କିଛିନା କିଛି ସ୍ମରଣୀୟ ଅନୁଭୂତି ଉପଲବ୍ଧ ହୋଇଥାଏ । ସେହି ଅନୁଭୂତିଗୁଡ଼ିକ ମଧ୍ୟରୁ କିଛି ଘଟଣା ଅବିସ୍ମରଣୀୟ ଭାବରେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମନୁଷ୍ୟ ପକ୍ଷରେ ଭୁଲିଯିବା କଷ୍ଟସାଧ୍ୟ ଅଟେ । ଏହି ଅବିସ୍ମରଣୀୟ ଅନୁଭୂତି ଶିକ୍ଷକ ଛାତ୍ର ମଧ୍ୟରେ, ପିତା ପୁତ୍ର ମଧ୍ୟରେ, ଭାଇ ଭାଇ ମଧ୍ୟରେ ତଥା ସାଙ୍ଗ ସାଙ୍ଗ ମଧ୍ୟରେ ସ୍ୱତଃପ୍ରବୃତ୍ତ ଭାବରେ ସୃଷ୍ଟି ହୋଇଯାଏ । ମୋର ଜୀବନରେ ସେହିଭଳି ଜଣେ ବ୍ୟକ୍ତି ସହିତ ମୈତ୍ରୀଭାବ ସୃଷ୍ଟି ହୋଇଥିଲା, ଯାହା ଉଦ୍ଦେଶ୍ୟରେ ମୁଁ ଏହି ପ୍ରବନ୍ଧଟିକୁ ରଚନା କରିବାକୁ ଯାଉଛି, ସେ ହେଉଛି ମୋର ପ୍ରିୟସାଙ୍ଗ ରବୀଶ । ବାଲ୍ୟାବସ୍ଥାରୁ ଆରମ୍ଭ କରି ମୁଁ ବହୁ ଭାବରେ ତା' ସଙ୍ଗ-ସାନ୍ନିଧ୍ୟ ଲାଭ କରିଛି । ମୋତେ ସେ ଶ୍ରଦ୍ଧାରେ 'ଚନ୍ଦୁ' ବୋଲି ଡାକେ ଏବଂ ସେହି ଡାକରେ କେତେ ମଧୁର ଭାବ ପରିଲକ୍ଷିତ ହୁଏ, ତାହା ମୁଁ ଆଜି ପର୍ଯ୍ୟନ୍ତ ତା'ର ଅନୁପସ୍ଥିତିରେ ମଧ୍ୟ ଉପଲବ୍ଧି କରୁଛି । ଯଦିଓ ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ମୁଁ ତା' ସହିତ ଗୋଟିଏ କ୍ଲାସ୍‌ରେ ଅଧ୍ୟୟନ କରି ନାହିଁ; କିନ୍ତୁ ମୁଁ ବ୍ୟକ୍ତିଗତ ଭାବରେ ସବୁ ସମୟରେ ଯେକୌଣସି ଭଲ କାର୍ଯ୍ୟ କରିବା ପୂର୍ବରୁ ତା'ର ପରାମର୍ଶ ନିଏ ଏବଂ ସେ ମଧ୍ୟ ମୋ ମନ ମୁତାବକ କଥା ମୋତେ କହିଥାଏ । ସେ ଯେତେବେଳେ ଏସ୍.ସି.ଏସ୍. କଲେଜ, ପୁରୀରେ ବିଜ୍ଞାନରେ ସ୍ନାତକୋତ୍ତର ପଢୁଥିଲା, ମୁଁ ମଧ୍ୟ ଏସ୍.ଏସ୍. କ୍ୟାମ୍ପସ୍, ପୁରୀରେ ବି.ଏଡ୍. କୋର୍ସ କରୁଥିଲି । ଆମେ ଦୁଇଜଣ ସବୁଦିନ ସନ୍ଧ୍ୟା ସମୟରେ ସତ୍‌ସଙ୍ଗ ଠାକୁରବାଡ଼ି, ପୁରୀକୁ ପ୍ରାର୍ଥନା କରିବାକୁ ଯାଉ ଏବଂ ପ୍ରାର୍ଥନା ପରେ କିଛି ସମୟ ଦୁଇଜଣଙ୍କ ଭିତରେ ଇଷ୍ଟଙ୍କ ସମ୍ବନ୍ଧୀୟ





ଆଲୋଚନା ହୁଏ, ତା' ପରେ ଦୁଇଜଣ ନିଜ ନିଜର ରୁମ୍‌କୁ ଫେରି ନିଜର ପାଠ୍ୟବିଷୟଗୁଡ଼ିକୁ ଅଧ୍ୟୟନ କରୁ । ପୁରୀରେ ମୁଁ ରହିବା ସମୟରେ ହଠାତ୍ ଦିନେ ତା'ର ପିତା ତଥା ମୋର ପୂଜ୍ୟ କକେଇ ତାକୁ ଏବଂ ମୋତେ ଫୋନ୍ କରି କହିଲେ ଯେ, ପୂଜନୀୟ ବିଙ୍କିଦା ସତ୍‌ସଙ୍ଗ ବିହାର, ଭୁବନେଶ୍ୱରକୁ ଆସିଛନ୍ତି । ତେଣୁ ତୁମେ ଦୁଇଜଣ ଆସି ଆସନ୍ତାକାଲି ସ୍ୱସ୍ତ୍ୟୟନୀ ବ୍ରତ ତାଙ୍କଠାରୁ ଗ୍ରହଣ କର । ସେଦିନ ଥିଲା ୦୪.୦୪.୨୦୦୯ ତାରିଖ । ଆମେ ଦୁଇଜଣ ଫୋନ୍‌ରେ କଥାବାର୍ତ୍ତା ହୋଇ କୌଣସି କଥା ନ ଭାବି ତା' ପରଦିନ ଅର୍ଥାତ୍ ୦୫.୦୪.୨୦୦୯ ରିକ ରବିବାର ଦିନ ନିଷ୍ଠାପର ଭାବରେ ସ୍ୱସ୍ତ୍ୟୟନୀ ବ୍ରତ ଗ୍ରହଣ କରିବା ଉଦ୍ଦେଶ୍ୟରେ ଭୁବନେଶ୍ୱର ସତ୍‌ସଙ୍ଗ ବିହାରରେ ଆସି ସକାଳ ସାତ ଘଟିକା ସମୟରେ ପହଞ୍ଚିଲୁ ଏବଂ ରଦ୍ଧୀଶ ପୂଜନୀୟ ବିଙ୍କିଦାଙ୍କ ନିକଟରେ ନିବେଦନ କରି କହିଲା – "ଆମେ ଦୁଇଜଣ ଆପଣଙ୍କଠାରୁ ସ୍ୱସ୍ତ୍ୟୟନୀ ବ୍ରତ ଗ୍ରହଣ କରିବୁ । ତା'ର ନିବେଦନରେ ପୂଜନୀୟ ବିଙ୍କିଦା ସମ୍ମତି ପ୍ରକାଶ କଲେ ଏବଂ ଆମେ ଦୁଇଜଣ ତାଙ୍କଠାରୁ ସ୍ୱସ୍ତ୍ୟୟନୀ ବ୍ରତ ଗ୍ରହଣ କରି ସେହିଦିନ ଅପରାହ୍ଣ ସମୟରେ ପୁରୀକୁ ପ୍ରତ୍ୟାଗମନ କଲୁ । ସେହିଦିନଟି ତା'ପାଇଁ ଏବଂ ମୋପାଇଁ ଅବିସ୍ମରଣୀୟ ଦିବସ ଥିଲା । ସେ ଓ.ୟୁ.ଏ.ଟି.ରେ ଚାକିରି କରୁଥିଲା । ମୁଁ ବହୁତ ଥର ତା'ର ରୁମ୍‌କୁ ଯାଇଛି । ଦୁଇଜଣ ଏକାଠି ରୋଷେଇ କରୁ ଏବଂ ଏକାଠି ଭୋଜନ କରୁ । ସେହି ଦିନଗୁଡ଼ିକୁ ମୁଁ ଆଜି ପର୍ଯ୍ୟନ୍ତ ଭୁଲିପାରୁ ନାହିଁ । ପ୍ରାୟତଃ ୨୦୦୯ ମସିହାଠାରୁ ଆରମ୍ଭ କରି ୨୦୧୩ ମସିହା ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷ ପୂଜ୍ୟପାଦ ଦାଦାଙ୍କ ଜନ୍ମତିଥିରେ ଆମେ ଦୁଇଜଣ ଏକାଠି ଦେଓଘର ଯାଉ ଏବଂ ପୂଜ୍ୟପାଦ ଦାଦାଙ୍କ ଉଦ୍ଦେଶ୍ୟରେ କିଛି ଜିନିଷ ନେଇ ତାଙ୍କ ନିକଟରେ ନିବେଦନ କରିଦେଉ । ମୋର ଯିବା ଆସିବା ଟ୍ରେନ୍ ଟିକେଟ୍ ସେ ମୋତେ ନ ପଚାରି ମଧ୍ୟ କରିଦିଏ । ତେଣୁ ମୁଁ ପ୍ରତି ମୁହୂର୍ତ୍ତରେ ତା'ର ଅନୁପସ୍ଥିତିକୁ ଝୁରି ହେଉଛି ।

ମୋର ଜୀବନରେ ସେ ଯେଉଁ ସାହାଯ୍ୟ ସହଯୋଗ ମୋ ପାଇଁ କରିଛି, ତାହା ମୁଁ ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ସହଜରେ ଭୁଲିପାରିବି ନାହିଁ । ଥରେ ମୁଁ ମୋର ଚାକିରି ଉଦ୍ଦେଶ୍ୟରେ କଳାହାଣ୍ଡି ଯାଇଥିଲି । ଫେରିବା ସମୟରେ ମୋର





ଅସାବଧାନତା ଯୋଗୁଁ ଜଣେ ଦୁଷ୍ଟ ବ୍ୟକ୍ତି ମୋର ଅସଲି ସାର୍ଟିଫିକେଟ୍‌ଗୁଡ଼ିକ ଥିବା ଏକ ବ୍ୟାଗ୍‌କୁ ଟ୍ରେନ୍‌ରୁ ନେଇଗଲା । ମୁଁ ଭୁବନେଶ୍ୱର ଷ୍ଟେସନରେ ଆସି ଦେଖିଲି ମୋର ବ୍ୟାଗ୍ ନାହିଁ । ତା' ପରଦିନ ରବୀଶକୁ ଫୋନ୍ କରି କହିଲି । ସେ ମୋ ସହିତ ଯାଇ ଭୁବନେଶ୍ୱର ଷ୍ଟେସନ୍‌ରେ ଥିବା ଥାନାରେ ଏତଲା ନିଜେ ଲେଖି ଥାନାରେ ଦେଲା ଏବଂ ମୋ ସହିତ ଗାଁକୁ ଆସି ତିର୍ତ୍ତୋଲରେ ଥିବା ଏକ ଓକିଲଙ୍କ ସହ ପରାମର୍ଶ କରି Duplicate Certificate ପାଇଁ ଯାହା କରଣୀୟ, ତାହା କରିଥିଲା । ଅବଶ୍ୟ ପରେ ମୁଁ ମୋର Original Certificate ପାଇଲି; କିନ୍ତୁ ସେହି ସମୟରେ କରାଯାଇଥିବା କାର୍ଯ୍ୟଗୁଡ଼ିକ ମୋ ପାଇଁ ଜରୁରୀ ଥିଲା । ତେଣୁ ତା'ର ସାହାଯ୍ୟ ସହଯୋଗ ମୁଁ କେବେହେଲେ ମୋ ଜୀବନରେ ଭୁଲିପାରିବି ନାହିଁ । ମୋର ଯେତେବେଳେ ଚୁକ୍ତିଭିତ୍ତିକ ଶିକ୍ଷକ ନିଯୁକ୍ତି ହେଲା, ତା'ର ଗୋଟିଏ ବର୍ଷ ପରେ ମୁଁ ଘରପାଖ ସ୍କୁଲ୍‌କୁ ଆସିବାପାଇଁ ଜଗତ୍‌ସିଂହପୁର ଜିଲ୍ଲା ଶିକ୍ଷା ଅଧିକାରୀଙ୍କ ନିକଟରେ ନିବେଦନ କଲି । ସେ ମୋର ଆବେଦନକୁ ସ୍ୱୀକାର ନ କରିବାରୁ ମୁଁ ରବୀଶକୁ କହିଲି । ସେ ମୋତେ ତା' ସହିତ ଭୁବନେଶ୍ୱର ଯାଇ ମାନ୍ୟବର ମନ୍ତ୍ରୀ ଡକ୍ଟର ଦାମୋଦର ରାଉତଙ୍କୁ ଭେଟିବାପାଇଁ କହିଲା । ମୁଁ ତା' ସହିତ ମାନ୍ୟବର ମନ୍ତ୍ରୀ ଡକ୍ଟର ରାଉତଙ୍କ ବାସଭବନକୁ ଗଲି ଏବଂ ଦାମବାବୁଙ୍କର ତା' ପ୍ରତି ଶ୍ରଦ୍ଧା ଏବଂ ଭଲ ପାଇବା ଥିବାରୁ ସେ ତା'ର କଥାରେ ମୋର ସମସ୍ୟାର ସମାଧାନପାଇଁ ତାଙ୍କ ନିଜର ଜନ୍ମସ୍ଥାନ ମଲ୍ଲିପୁର ସ୍କୁଲ୍‌କୁ ବଦଳି କରିବାପାଇଁ ଜଗତ୍‌ସିଂହପୁର ଜିଲ୍ଲା ଶିକ୍ଷା ଅଧିକାରୀଙ୍କ ନିକଟକୁ ଏକ ଚିଠି ଲେଖି ମୋ ହାତରେ ଦେଲେ । ଅବଶ୍ୟ ମୋର ବ୍ୟକ୍ତିଗତ ସମସ୍ୟା ଯୋଗୁଁ ବଦଳି ହୋଇପାରିଲା ନାହିଁ, କିନ୍ତୁ ତା'ର ସାହାଯ୍ୟ ସହଯୋଗ ମୋ ପାଇଁ ମହାନ୍ ଥିବାରୁ ମୁଁ ଜୀବନରେ କେବେ ତାହା ଭୁଲିପାରିବି ନାହିଁ ।

ମୁଁ ପ୍ରାୟ ଚାରି ପାଞ୍ଚ ଦିନରେ ଥରେ ତା' ପାଖକୁ ଫୋନ୍ କରେ ଏବଂ ଅନ୍ତରର ଆବେଗଭରା କଥୋପକଥନ ତା' ସହିତ ହୁଏ । ସେହି ଅଭ୍ୟାସ ମୋର ଥିବାରୁ ସେ ଯେଉଁଦିନ ପରଲୋକ ଗମନ କରିବ, ସେହିଦିନ ସକାଳ ୭ ଘଟିକା ସମୟରେ ତା' ସହିତ ମୁଁ ପାଞ୍ଚ ମିନିଟ୍ କଥାବାର୍ତ୍ତା ହୋଇଛି ଏବଂ





ତା'ର ଶରୀର ସାମାନ୍ୟ ଅସୁସ୍ଥତା ପରିଲକ୍ଷିତ ହୋଇଛି ବୋଲି ସେ ମୋତେ କହିଲା । ତା' ପରେ ମୁଁ ଯେତେବେଳେ ସ୍କୁଲ୍‌ରେ ପହଞ୍ଚେ, ସେହି ସମୟରେ ବାପା ଫୋନ୍ କରି ମୋତେ କହିଲେ – "ରଦ୍ଧୀଶ ଚାଲିଗଲା !" ଏହି କଥା ଶୁଣି ମୋ ମୁଣ୍ଡ କ'ଣ ହୋଇଗଲା । ମୁଁ କ୍ଲାସ୍‌ରୁମ୍‌ରୁ ଆସି କମନ୍ ରୁମ୍‌ରେ ବସି କାନ୍ଦିବାକୁ ଲାଗିଲି । ସଙ୍ଗେ ସଙ୍ଗେ ସ୍କୁଲ୍‌ରୁ ଘରକୁ ଆସିଲି । ଯେତେବେଳେ ତା'ର ମୃତ ଶରୀର ଗାଁକୁ ଆସିଲା । ତାହାକୁ ଦେଖିବାପାଇଁ ମୋର ଧୈର୍ଯ୍ୟ ନ ଥିଲା । ପରିଶେଷରେ ଯେଉଁ ହାତରେ ମୁଁ ତା'ର ଶରୀର ଏବଂ ହାତ ଧରି ବହୁତ ମଡ଼ା କରିଥିଲି, ସେହି ହାତରେ ତା'ର ମୃତଶରୀରକୁ ନେଇ ସଂସ୍କାର କରିବାକୁ ଗଲି । ସେହି ଅଭୁଲା ସ୍ମୃତି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ଭୁଲିପାରିବି ନାହିଁ । ଏବେ ପର୍ଯ୍ୟନ୍ତ ବେଳେ ବେଳେ ଅନ୍ୟମନସ୍କ ଭାବରେ ତା'ର ଫୋନ୍ ନମ୍ବରରେ କଲ୍ କରିଦିଏ ଏବଂ ପଛରେ ତା'ର କଥା ମନେପଡ଼େ । ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ନିକଟରେ ମୁଁ ସବୁବେଳେ ପ୍ରାର୍ଥନା କରୁଛି, ତା'ର ଆତ୍ମାର ସଦ୍‌ଗତି ହେଉ ଏବଂ ତା'ର ପୁନର୍ଜନ୍ମ ଏହିଭଳି ସଂସ୍କାରିତ ପରିବାରରେ ହେଉ ।

ଶ୍ରୀମଦ୍ ଭଗବତ୍ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି –

"ଅନ୍ତଃ କାଳେ ଯଃ ମାଂ ଏବ ସ୍ମରନ୍ ମୁକ୍ତ୍ୱା କଳେବରମ୍ ।
ସଃ ପ୍ରୟାତି ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ॥"

ଅର୍ଥାତ୍, ଯେଉଁ ବ୍ୟକ୍ତି ଜୀବନର ଶେଷ ମୁହୂର୍ତ୍ତରେ ମୋତେ ସ୍ମରଣ କରି ତା'ର ଶରୀର ତ୍ୟାଗ କରେ, ସେ ନିଶ୍ଚିତ ପରଜନ୍ମରେ ମୋର ଭାବକୁ ଆଧାର କରି ଜନ୍ମଗ୍ରହଣ କରିବ, ଏଥିରେ କୌଣସି ସନ୍ଦେହ ନାହିଁ । ତେଣୁ ରଦ୍ଧୀଶ ନିଶ୍ଚିତ ଶେଷ ସମୟରେ ଠାକୁରଙ୍କ ନାମକୁ ସ୍ମରଣ କରି ତା'ର ଶେଷ ନିଃଶ୍ୱାସ ତ୍ୟାଗ କରିଛି ଏବଂ ସେ ପରଜନ୍ମରେ ତାଙ୍କର ଭାବକୁ ଆଧାର କରି ଜନ୍ମଗ୍ରହଣ କରିବ ବୋଲି ମୁଁ ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା କରୁଛି ଏବଂ କାମନା କରୁଛି ।



  

# ଅଜଣା ଅତିଥି

ସୁବାଷ ଚନ୍ଦ୍ର ତ୍ରିପାଠୀ
କଣ୍ଟାବଲ୍ଲଭପୁର, ଜଗତ୍‌ସିଂହପୁର

ଚାହୁଁ ଚାହୁଁ ବର୍ଷେ ବିତିଗଲା । ବିଶ୍ୱାସ ନ ଲାଗିଲେ ମଧ ତୁମର ଅନୁପସ୍ଥିତିରେ ଶୂନ୍ୟତା ପ୍ରତ୍ୟେକ ମୁହୂର୍ତ୍ତରେ ଅନୁଭବ ହୁଏ । ତୁମ କଥା ଭାବିଲାବେଳକୁ ମନେ ପଡ଼ିଯାଏ ସେହି ଦିନର ଅଭୁଲା ସନ୍ଧ୍ୟା ।

ସନ୍ଧ୍ୟା ପ୍ରାୟ ୬ଟା ବାଜିଥାଏ । ଟ୍ୟୁସନ୍‌କୁ ବାହାରି ସାର୍ଟଟା ପିନ୍ଧିସାରି କଲମଟା ପକେଟ୍‌ରେ ରଖୁଥାଏ । ହଠାତ୍ ଫୋନ୍ ଆସିଲା । ଦେଖିଲି – ସିସେଜ୍ ସାର୍ ଫୋନ୍ କରିଛନ୍ତି । ମୁଁ ହାଲୋ କହିଲା ପରେ ସେପଟୁ ସାର୍ କହିଲେ – "ସାର୍ ! ଆପଣଙ୍କୁ ଗୋଟେ ଖରାପ ଖବର ଦେବି ।" ମୁଁ କ'ଣ ବୋଲି ପଚାରିବାରୁ ସାର୍ କହିଲେ – "ଆମ ହୃଷୀକେଶ ସାର୍‌ଙ୍କ ପୁଅ ଭଗବାନ୍‌ଙ୍କ ପାଖକୁ ଚାଲିଗଲେ ।" ସାଙ୍ଗେ ସାଙ୍ଗେ ଫୋନ୍‌ଟା କାଟିଦେଇ ଡମ୍ କରି ଖଟ ଉପରେ ବସିପଡ଼ିଲି । ଆଖିରୁ ଲୁହ ବୋହିଯାଉଥିଲା ମୋ ଅଜାଣତରେ । କିଛି ସମୟ ପରେ ମନକୁ ଭୁଲାଇବାକୁ ଯାଇ ଟ୍ୟୁସନ୍‌କୁ ଚାଲିଯାଇଥିଲି । ହେଲେ ସେଠାରେ ବି ମନ ଲାଗିଲାନି ।

ମୁଁ ବାବା (ହୃଷୀକେଶ ସାର୍)ଙ୍କ ସହିତ ବହୁତ ମିଶିଛି; କିନ୍ତୁ କେବେ ବି ରଦ୍ଧୀଶଙ୍କ ସହିତ ମିଶି ନ ଥିଲି କି ସେ ମୋ ସହିତ । ତଥାପି କାହିଁକି କେଜାଣି ସେଦିନ ମୋ ଆଖିରୁ ଲୁହ ବାହାରିଥିଲା ରଦ୍ଧୀଶଙ୍କ ପାଇଁ । ବାବା ରଦ୍ଧୀଶଙ୍କ ବାହାଘର କାର୍ଡ଼ ଟ୍ରେନିଂ ସେଣ୍ଟର୍‌ରେ ମୋତେ ନ ଦେଇ ନିଜେ ଆମ ଘରକୁ ଚାଲିଆସିଥିଲେ । ରଦ୍ଧୀଶଙ୍କ ସହିତ ମିଶି ନ ଥିଲେ ବି ଚାଲିଯାଇଥିଲି ତାଙ୍କ ବାହାଘରକୁ । ଆଗରୁ କେବେ ରଦ୍ଧୀଶଙ୍କୁ ଦେଖି ନ ଥିଲି, ଦେଖିଲା

ପରେ ନିଜର ପରି ଲାଗିଲା । ରିସେପ୍‌ସନ୍‌ରେ ବି ଆମେ ମିଶିନୁ କି କିଛି କଥା ବି ହେଇନୁ । ବାହାଘରର କିଛି ଦିନ ପରେ ମୁଁ ଫେସ୍‌ବୁକ୍‌ରେ ରବୀଶଙ୍କୁ accept friend request ପଠେଇଥିଲି । ଫେସ୍‌ବୁକ୍‌ରେ ଅଜଣା ଲୋକଙ୍କ requestକୁ accept କରାଯାଏ ନାହିଁ; କିନ୍ତୁ ଆଶ୍ଚର୍ଯ୍ୟର କଥା, ସେ ମୋ requestକୁ accept କରିଥିଲେ, ଯେମିତି ସେ ମୋତେ ଆଗରୁ ଜାଣିଛନ୍ତି । ହୁଏତ ବାହାଘର ସମୟରେ ଦେଖି ମନେ ରଖିଥିବେ ।

ମୁଁ ଓଡ଼ିଶାକୁ ଆସିବା ପୂର୍ବରୁ ଦିଲ୍ଲୀରେ ଥିଲି । ବାବା, ରବୀଶ ଏମାନଙ୍କ ସହ ମୋର କିଛି ସମ୍ପର୍କ ନ ଥିଲା । ଯେମିତି କିଏ ଜଣେ ଦଉଡ଼ିରେ ବାନ୍ଧି ଟାଣି ଆଣିଲା ପରି ଲାଗୁଛି ଏମାନଙ୍କ ପାଖକୁ । ଶୁଣିଛି, ପୂର୍ବଜନ୍ମର କିଛି କାମ ବାକି ରହିଯାଇଥିଲେ ଏ ଜନ୍ମରେ ତାହା ପୂରଣ କରିବାକୁ ପଡ଼ିଥାଏ । ସତରେ କ'ଣ କିଛି ସମ୍ପର୍କ ଥିଲା ଏମାନଙ୍କ ସାଙ୍ଗରେ ? ମୋ ଆସିବାକୁ ସେ କ'ଣ ଅପେକ୍ଷା କରିଥିଲେ !! ଏବେ ବି ଉତ୍ତର ଖୋଜିବାକୁ ଚେଷ୍ଟା କରୁଛି ।

ବୋଧହୁଏ, ସେ ଆସିଥିଲେ ମୋ ଜୀବନରେ ଜଣେ ଅଜଣା ଅତିଥି ହୋଇ, ଆଉ ମୁଁ ସେହି ଅତିଥିର ଠିକ୍ ଭାବେ ଅତିଥି ସତ୍କାର କରିଛି କି ନାହିଁ ଜାଣିନି । ମିଶି ନ ଥିଲେ ବି ବାବା, ସତ୍‌ସଙ୍ଗରେ ଥିବା ଗୁରୁଭାଇ ତଥା ଅନ୍ୟ ସାର୍‌ମାନଙ୍କଠାରୁ ରବୀଶଙ୍କ ବିଷୟରେ ବହୁତ କିଛି ଶୁଣିଛି । ସେମାନଙ୍କଠାରୁ ଶୁଣିଲା ପରେ ତାଙ୍କର କର୍ମନିଷ୍ଠା, ସରଳତା, ନିଷ୍କପଟତା ଗୁଣକୁ ମୁଁ ବି ଅନୁଭବ କରିପାରୁଛି ।

ଆଜିର ଦିନରେ ମୋ ହୃଦୟର ଗଭୀରତାରୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହିତ ତାଙ୍କର ଅମର ଆତ୍ମାର ଶାନ୍ତି ଓ ସଦ୍‌ଗତି ନିମନ୍ତେ ଜଗତର ନାଥ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଭକ୍ତିପୁତ ପ୍ରାର୍ଥନା କରୁଛି ।



  

# ଉଜ୍ଜ୍ୱଳ ଜ୍ୟୋତିଷ୍କ


ମିରା ଦାସ

ଚନ୍ଦାପାଟ (ଭାଟସାହି), ଜଗତ୍‌ସିଂହପୁର


ଆମ ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରର ଋତ୍ୱିକ୍ ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ, ସାରା ଓଡ଼ିଶାର ଜଣେ ସ୍ୱନାମଧନ୍ୟ ଋତ୍ୱିକ୍ ଭାବ୍‌ରେ ଖୁବ୍ ଜଣାଶୁଣା । ମୋପାଇଁ କିନ୍ତୁ ମୋର ସେହି ପ୍ରିୟ ଆଉ ଆଦରର ଭାଇନା ବୋଲି ମୁଁ ଜାଣେ । ଆଜି ତାଙ୍କରି ଇଚ୍ଛାରେ ତାଙ୍କର ଏକମାତ୍ର ପୁତ୍ରର ସ୍ମରଣିକା ଉନ୍ମୋଚନ ହେବାକୁ ଯାଉଛି । ସେ ଇଚ୍ଛା କରିଛନ୍ତି, ମୁଁ ଏକ ଲେଖା ଦେବାପାଇଁ । କୌଣସି ଦୁଃଖଦ କଥା ଦେଇ ତାଙ୍କର ମନକୁ ଭାରାକ୍ରାନ୍ତ କରିବାକୁ ଚାହେଁନି । କେବଳ ଏତିକି ଲେଖିବାକୁ ଚାହେଁ । ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ର ଏକ ସୁନ୍ଦର, ସୁଠାମ ନିୟତ କର୍ମୀ ହରାଇଲା । ଏହି ଶୂନ୍ୟତା ପୂରଣ କରିବାପାଇଁ ବହୁ ସମୟ ଲାଗିପାରେ । କିନ୍ତୁ ଏମିତି ଏକ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତିତ୍ୱ ଗଢ଼ିତୋଳିବା କଷ୍ଟକର ବ୍ୟାପାର । ମୁଁ ଯେତିକି ଅନୁଭବ କରିଛି, ରଦ୍ଧୀଶଙ୍କର ଗୁରୁଜନଙ୍କ ପ୍ରତି ସମ୍ମାନବୋଧ, ମୋଟାମୋଟି ଭାବେ କହିବାକୁ ଗଲେ ଗୋଟେ ମଣିଷର ଆଦର୍ଶଙ୍କୁ ଅନୁସରଣ କରିଚାଲିଲେ ତା'ର ଭାବ, ଭାଷା, କର୍ମ ଯେମିତି ହେବା ଦରକାର, ତାହା ରଦ୍ଧୀଶଙ୍କ ପାଖରେ ମହଜୁଦ୍ ଥିଲା । ମୋତେ ବେଶି ଭଲ ଲାଗେ ସତ୍‌ସଙ୍ଗରେ ତାଙ୍କର ସତ୍ୟାନୁସରଣ ପାଠ । ତାହା ପାଠକଲେ ମୋତେ ଅନୁଭବ ହୁଏ, 'ଟର୍ଣ୍ଣାଡୋ' ବହିଲା ଭଳି । ହୃଦୟସ୍ପର୍ଶୀ ସ୍ୱଷ୍ଟୋକ୍ତି । ଏବେବି ତାଙ୍କର ସେହି ବ୍ୟକ୍ତିତ୍ୱ ଇଷ୍ଟଚନ୍ଦନ ଆମମାନଙ୍କର ହୃଦୟସ୍ପର୍ଶୀ ହୋଇ ରହିଛି ।

ଏହି ଉଦ୍ଦେଶ୍ୟରେ ଶ୍ରୀଶ୍ରୀଠାକୁରଙ୍କର ଏକ ବାଣୀ ମୋର ମନେପଡ଼େ –





When the Ideal is awake in man,
he is active, agile
inquisitive, responsible
alert of tactful,
in a word all faculties
bloom & glow.

ମୁଁ ଅନୁଭବ କରେ, ସେହି ପବିତ୍ର ଆତ୍ମା ପାର୍ଥିବ ଜଗତରେ ବେଶି ଦିନ ରହିବାପାଇଁ ଆସି ନ ଥିଲା । ତେଣୁ ସେ ତା'ର କର୍ମ ଶେଷକରି ପରମପିତାଙ୍କ ଶ୍ରୀଚରଣରେ ବିଲୀନ ହୋଇଗଲା ।

ସେହି ପବିତ୍ର ଆତ୍ମାକୁ ଆମର କଳୁଷିତ ମନ କାଳେ ଭୁଲିଯିବ, ସେଥିପାଇଁ ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଏକ ସୁନ୍ଦର ମୁହୂର୍ତ୍ତରେ ତାଙ୍କୁ ଆମମାନଙ୍କ ପାଖରୁ ନେଇଗଲେ । କବିଙ୍କ ଲେଖାରେ –

"ଚିର ସୁନ୍ଦରଙ୍କ ସୁନ୍ଦର ସୃଷ୍ଟିରେ,
ଅସୁନ୍ଦର କାହିଁ ପଡ଼ିବ ଦୃଷ୍ଟିରେ ।"

ସେହି ସୁନ୍ଦର ଆଉ ଅନ୍ତରଙ୍ଗ ମୁହୂର୍ତ୍ତ ଥିଲା - ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ଶୁଭ ୧୨୭ତମ ଆବିର୍ଭାବ ଉତ୍ସବ ଉପଲକ୍ଷେ ସାରା ବିଶ୍ୱରେ ଭାଦ୍ରବ ସତ୍‌ସଙ୍ଗ ପରିକ୍ରମା । ଏହା କ'ଣ କେବେ ଭୁଲିହୁଏ ?

ଜନ୍ମ ଆଉ ମୃତ୍ୟୁର ରହସ୍ୟ ସେହି ଚିରସୁନ୍ଦର ହିଁ ଜାଣନ୍ତି । ଆମର କଳୁଷିତ ଚକ୍ଷୁରେ କେବଳ ଅସୁନ୍ଦରହିଁ ଦୃଷ୍ଟିରେ ପଡ଼େ ।

ସେହି ପବିତ୍ର ଆତ୍ମାକୁ ମୋର ଆନ୍ତରିକ 'ଜୟଗୁରୁ' ଜଣାଏ ।

ପରିଶେଷରେ ମୋର ପ୍ରିୟ ଭାଇନାଙ୍କ ଉଦ୍ଦେଶ୍ୟରେ ପରମପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କର ଶ୍ରୀହସ୍ତ ଲିଖିତ ଏକ କବିତା (ଆଶୀର୍ବାଦ) ଅର୍ପଣ କରିବାକୁ ଚାହେଁ ।

"ସଂସାର ସମର କ୍ଷେତ୍ରେ ମିତ୍ର ନାହିଁ କେହୁ,
ମରେ ଗେଲେ ସବ୍‌ଗେଲ କାର ନୟ କେହୁ ।





ଭ୍ରାତା, ଭଗିନୀ, ମାତା, ପିତା ପୁତ୍ର କନ୍ୟାଗଣ,
ମାୟା କାରାଗାର ଏରା ମାୟାର ଭବନ ।

ମାୟା ସ୍ନେହଁ ମାୟା ଭକ୍ତି ମାୟାଇ ପର,
ମାୟାମୟ ତ୍ରିସଂସାର କେହୁ ନୟ କାର ।

ଯଖନ ସମର କ୍ଷେତ୍ରେ ପ୍ରବୃତୟେ ନର,
ବନ୍ଧୁ ହୟେ ସକଲଇ କେହୁ ନୟ ପର ।



ମାୟାମୟ ବନ୍ଧୁଗଣ ନିଧନ କାରଣେ,
ଖୋଁଜେ ସବେ ମାୟା କାରେ ଭୁଲାବେ କେମନେ ।

ତାଇ ବଲି ବାରବାର ଓରେ ଭ୍ରାନ୍ତ ମନ,
ମାୟାରୂପ କାରାଗାରେ ପଡ଼ୋନା କଖନ ।"

ରବ୍ଦୀଶ ଥିଲେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ସେ ଆମକୁ ଦିଶୁ ନ ଥିଲେ ମଧ୍ୟ ଅଦୂରରେ ରହି ସବୁଦିନ ତାଙ୍କର ଜ୍ୟୋତିରେ ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରକୁ ଆଲୋକିତ କରୁଥିବେ । ପରମପିତାଙ୍କ ନିକଟରେ ତାଙ୍କର ବିଦେହୀ ଆତ୍ମା ଚିରଶାନ୍ତି ଲାଭ କରୁ – ଏହାହିଁ ପ୍ରାର୍ଥନା ।

●





# ଅନନ୍ତ ପଥର ଯାତ୍ରୀ

ଡ. ଗୋପୀନାଥ ପରିଡ଼ା, ସ.ପ୍ର.ର.
ପ୍ରାକ୍ତନ ନିର୍ଦ୍ଦେଶକ, ହର୍ଟିକଲ୍‌ଚର, ଓଡ଼ିଶା
ସାଧନାକୁଞ୍ଜ, ୟୁନିଟ୍-୮, ଭୁବନେଶ୍ୱର

ଯାହାର ଶେଷ ନାହିଁ, ତାହାହିଁ ଅନନ୍ତ । ଏପରି କ'ଣ ରହିଛି ଯେ, ତା'ର ଶେଷ ନାହିଁ । ଏ ପ୍ରଶ୍ନର ଉତ୍ତର କିଏ ଦେବ । ଯାହାର ଶେଷ ନାହିଁ କିମ୍ୱା ଯିଏ ସେଇ ଜିନିଷଟା ଅନୁଭବ କରିଛନ୍ତି, ସେଇ କେବଳ କହିପାରନ୍ତି । ଆତ୍ମାର ଅମରତ୍ୱ ବିଷୟ ବୁଝାଇବାକୁ ଯାଇ ଶ୍ରୀମଦ୍ ଭଗବତ୍ ଗୀତାରେ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ କହିଲେ –

"ବହୁନି ମେ ବ୍ୟତୀତାନି ଜନ୍ମାନୀ ତବଚାଽର୍ଜୁନ ।
ତାନ୍ୟହଂ ବେଦ ସର୍ବାଣି ନତ୍ୱଂ ବେତ୍ଥ ପରନ୍ତପ ।।"

ଅର୍ଥାତ୍ ମୋର ଅନେକ ଜନ୍ମ ହୋଇଛି, ତୁମେ ମଧ ଅନେକ ବାର ଜନ୍ମ ନେଇଛ । କିନ୍ତୁ ସେସବୁ ମୁଁ ଜାଣେ, ମୋର ମନେଅଛି, ତୁମର ମନେ ନାହିଁ । ଆତ୍ମାର ଅନନ୍ତତାର ବୈଜ୍ଞାନିକ ଓ ତାତ୍ତ୍ୱିକ ଦିଗ ଦର୍ଶାଇ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର କହିଲେ – "ତୁମର ଆତ୍ମା ଯେ ଅନନ୍ତ, ତାହା ତୁମେ ଯଦି ଜାଣି ନ ପାରିଲ, ତେବେ ସେ ଅନନ୍ତତ୍ୱ ତୁମପାଇଁ ଅର୍ଥହୀନ ହୋଇପାରେ ।" ଏହାହିଁ ସାଧାରଣ ଲୋକ କ୍ଷେତ୍ରରେ ହୁଏ । ମରିଗଲା, ସରିଗଲା । ତା' ପରେ ସବୁ ଅଜଣା । ତେଣୁ ଏତେ ଦୁଃଖ ମୃତ୍ୟୁ କଥା ଚିନ୍ତାକରି । ମଣିଷର ଚେତନା ସୂକ୍ଷ୍ମରୂପ ଧରି ଚାଲିଯାଏ । "ମନଃ ଷଷ୍ଠାଣିନ୍ଦ୍ରିୟାଣି ପ୍ରକୃତିଂ ସ୍ଥାନି କର୍ଷତି ।" ଅର୍ଥାତ୍, ଏ ଜନ୍ମର ଅଭିଜ୍ଞତା ନେଇଯାଏ; କିନ୍ତୁ ତା'ର ସେ ସ୍ମୃତି ନ ଥାଏ । ଏହି ଜନ୍ମର ସ୍ମୃତିକୁ ସଙ୍ଗରେ ନେଇଯିବାପାଇଁ, ଅର୍ଥାତ୍ ସ୍ମିତିଯୁକ୍ତ ଚେତନା ପ୍ରାପ୍ତ ହେବାପାଇଁ

ଶ୍ରୀଶ୍ରୀଠାକୁର କେତେକ ଉପାୟ ବତାଇଛନ୍ତି । ତା'ର ପ୍ରଥମ ଓ ପ୍ରଧାନ ହେଲା ସଦ୍‌ଗୁରୁ ଗ୍ରହଣ ଓ ଅକାଟ୍ୟ ନିଷ୍ଠା ସହିତ ତାଙ୍କର ଅନୁସରଣ । ତା'ହେଲେ ମରି ମଧ ମଣିଷ ଅମର । ଏହି ସ୍ମୃତି ଯଦି ସେ ବହିଚାଲେ, ତା'ହେଲେ ଅବଶ୍ୟ ତା'ର ବୋଧ ଆସିବ ମୁହିଁ ଆତ୍ମାରୂପେ ଅନନ୍ତ ପଥରେ ଚାଲିଛି । ତା'ର ବିବର୍ତ୍ତନ ଅବାରିତ ଭାବେ ଆଗଉଥିବ ।

କର୍ମଫଳ ଭୋଗ କରିବାପାଇଁ ଜୀବ ଜନ୍ମଗ୍ରହଣ କରେ । ଜୀବଦ୍ଦଶା ମଧ୍ୟରେ ମଣିଷ ଯେଉଁ ଯେଉଁ କର୍ମ କରେ, ତା'ର ଅଲିଭା ଦାଗ ମନ ଉପରେ ପକାଇଯାଏ । ଏହା ପରଜନ୍ମରେ ଅଦୃଷ୍ଟ ବା ଭାଗ୍ୟ ଭାବରେ ତା' ପାଖରେ ଉଭାହୁଏ । ଏହା ମଧ ଜଣାଯାଇଛି, କର୍ମଫଳ ଭୋଗ ହେଲାପରେ ତା'ର ଆଉ ଏ ସଂସାରରେ ରହିବା ଆବଶ୍ୟକ ହୁଏ ନାହିଁ । ଗଙ୍ଗାଦେବୀଙ୍କର ନାନା ପୁତ୍ର ଓ ଭୀଷ୍ମଙ୍କ ଜୀବନରୁ ଆମେ ଏଇ ଶିକ୍ଷା ପାଇଛେ । ଯେଉଁମାନଙ୍କର ଜନ୍ମମାତ୍ରକେ କର୍ମଫଳ ସମାପ୍ତ ହୋଇଯାଇଥିଲା, ସେମାନେ ଜନ୍ମ ପରେ ପରେ ଚାଲିଯାଇଥିଲେ; କିନ୍ତୁ ଭୀଷ୍ମଙ୍କର ଅଧିକ ସମୟ ରହିବାକୁ ଆବଶ୍ୟକ ପଡ଼ିଲା । ସେ ଯାହାହେଉ, ଏତେ ତତ୍ତ୍ୱକଥା ଜାଣିବା ଆମ ପକ୍ଷରେ ସମ୍ଭବ ନ ହୋଇପାରେ । ତେବେ ରଦ୍ଧୀଶ ବିଷୟରେ ମୁଁ ଏତିକି ହୃଦ୍‌ବୋଧ କରିଛି ଯେ, ସେ ଏକ ପୁଣ୍ୟାତ୍ମା ଥିଲା । ତା'ର ପ୍ରଥମ ଦୃଷ୍ଟାନ୍ତ, ସେ ଅତି କମ୍ ବୟସରୁ ପୁରୁଷୋତ୍ତମଙ୍କର ଦୀକ୍ଷା ପ୍ରାପ୍ତ ହେବାର ସୁଯୋଗ ପାଇଥିଲା । ସେଥିପାଇଁ ସେ ବୋଧହୁଏ, ଏକ ପୁଣ୍ୟ ପବିତ୍ର ପରିବାରରେ ଜନ୍ମ ହେବାର ସୁଯୋଗ ପାଇଥିଲା ଏବଂ ପୂର୍ବଜନ୍ମର ଅସମ୍ପୂର୍ଣ୍ଣ କର୍ମକୁ ଆଗେଇ ନେବାର ଯୋଗ୍ୟତା ଅର୍ଜନ କରିଥିଲା । ରଦ୍ଧୀଶର ଇଷ୍ଟନିଷ୍ଠା ଓ ଅଧ୍ୟାତ୍ମମାର୍ଗରେ ଅଗ୍ରସର ହେବାର ପ୍ରଗାଢ଼ ଚେଷ୍ଟା ଓ ଦୃଢ଼ତା ମୁଁ ଲକ୍ଷ୍ୟ କରିଛି । ମୁଁ ସବୁବେଳେ ଚାହୁଁଥିଲି, ସେ ଯେପରି ଶ୍ରୀଶ୍ରୀଠାକୁରଙ୍କ ଆଦର୍ଶ ବିଷୟରେ ଅଧିକ ଜ୍ଞାନ ଓ ଅଭିଜ୍ଞତା ଅର୍ଜନ କରି ଲୋକସମାଜରେ ସଞ୍ଚାରଣ କରିଦେଇପାରେ । ଜଣେ ବିଜ୍ଞାନ ଛାତ୍ର ହିସାବରେ ସେ ବୋଧ ଥିଲା ଓ ସତ୍ ଉଦ୍ୟମ ମଧ ଥିଲା ।





ରବ୍ବୀଶର ଧୀର ସ୍ୱଭାବ, ମଧୁର ବ୍ୟବହାର, ଇଷ୍ଟପ୍ରସଙ୍ଗ ପ୍ରଚାର ଓ ପ୍ରସାରପାଇଁ ଏକ ଅନୁକୂଳ ପରିବେଶ ଓ ବନ୍ଧୁ ପରିସର ସୃଷ୍ଟି କରିବାରେ ସକ୍ଷମ ହୋଇଥିଲା । ଏହି ଜୀବନରେ ଅଧିକ ଦିନ ରହିଥିଲେ ହୁଏତ ସେ ଦିଗରେ ଅଧିକ କୃତକାର୍ଯ୍ୟ ହୋଇପାରିଥା'ନ୍ତା । ତେବେ ଦୟାଲଙ୍କ ଇଚ୍ଛା ଓ କିଛି ମହତ୍ତର ଯୋଜନାପାଇଁ ତାକୁ ହୁଏତ କୌଣସି ବୃହତ୍ତର ପରିବେଶକୁ ନେଇଯାଇଛନ୍ତି, ତାହା ତାଙ୍କୁ ଜଣା । ମୋର ଶ୍ରୀଶ୍ରୀଠାକୁରଙ୍କ ଶ୍ରୀପଦରେ ବିନତୀ, ରବ୍ବୀଶ ଯେପରି ଏହି ଅନନ୍ତପଥର ଯାତ୍ରାରେ ଅଧିକରୁ ଅଧିକ ଇଷ୍ଟକର୍ମରେ ଜଡ଼ିତ ରହି ବିବର୍ତ୍ତନର ସୋପାନରେ ଆଗେଇ ଚାଲୁ ।

॥ ବନ୍ଦେ ପୁରୁଷୋତ୍ତମମ୍ ॥



# ସ୍ମୃତିତର୍ପଣ

**ଜନାର୍ଦ୍ଦନ ବନ୍ଦୋପାଧ୍ୟାୟ, ସ.ପ୍ର.ଋ.**
୫୦୬, ନୟାପଲ୍ଲୀ, ଭୁବନେଶ୍ୱର-୧୨

ଲେଖି ବସିଲାବେଳକୁ ବହୁତ ଦୁଃଖ, ବହୁତ ଲୋକଙ୍କର ଦୁଃଖ । କିଏ ଅବା ତାକୁ ଭଲପାଇ ନ ଥିଲେ, କିଏ ଅବା ତା'ର ଆପଣାର ନ ଥିଲେ ? ସ୍ୱାସ୍ଥ୍ୟରେ, ସୌନ୍ଦର୍ଯ୍ୟରେ, ଆଚାରରେ, ବ୍ୟବହାରରେ, କଥାରେ, ବାର୍ତ୍ତାରେ, ବିଦ୍ୟାରେ, ବୁଦ୍ଧିରେ, ଶ୍ରଦ୍ଧାରେ, ସମୀହରେ – ସର୍ବୋପରି ଇଷ୍ଟପ୍ରାଣତାରେ ସେହି କୁମର ଥିଲା ଅନନ୍ୟ । ଯେପରି ସ୍ୱର୍ଗରୁ ଓହ୍ଲାଇ ଆସିଥିବା ଦେବଦୂତଟିଏ । ଜଗତ୍‌ସିଂହପୁର ଜିଲ୍ଲା ଲଥାଙ୍ଗ ଗ୍ରାମର ବିଶିଷ୍ଟ ଶିକ୍ଷାବିତ୍ ତଥା ଶ୍ରୀଶ୍ରୀଠାକୁରଙ୍କର ଏକନିଷ୍ଠ କର୍ମୀ ଏବଂ ସହପ୍ରତିଋତ୍ୱିକ୍ ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟଙ୍କର ସୁପୁତ୍ର ସ୍ୱର୍ଗତ ରନ୍ଧୀଶ ଆଚାର୍ଯ୍ୟ । ଚାରି ଝିଅରେ ଗୋଟିଏ ପୁଅ, ଯାହାକୁ କହନ୍ତି ଏକୋଇର ବଳା ବିଶିକେସନ । କୃତିତ୍ୱର ସହିତ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଉପାଧି ଏମ୍.ଏସ୍‌ସି. ପାସ୍ କରିଥିବା ଉଦୀୟମାନ ଯୁବକ, ଏମ୍.ଫିଲ୍. ଏବଂ ଏଲ୍‌ଏଲ୍.ବି. ଡିଗ୍ରୀ ହାସଲ କରି ପିଏଚ୍.ଡି. ଡିଗ୍ରୀ ପାଇଁ ଗବେଷଣାରତ ଥିଲା ।' ଇତ୍ୟବସରରେ ଓଡ଼ିଶା କୃଷି ଏବଂ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧୀନରେ ନିଯୁକ୍ତି ପାଇ ଭୁବନେଶ୍ୱରରେ ଅବସ୍ଥାନ କରୁଥିଲା । ସେତେବେଳେ ମୁଁ ତାହାର ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲି । ଜଣେ ଆଜନ୍ମ ସତ୍‌ସଙ୍ଗୀ ହିସାବରେ ନିଜର ଇଷ୍ଟନିଷ୍ଠା, ବିନୟ, ନମ୍ରତା ଏବଂ ପ୍ରୀତିପୂର୍ଣ୍ଣ ବ୍ୟବହାର ଯୋଗୁଁ ଅଳ୍ପଦିନ ମଧ୍ୟରେହିଁ ଭୁବନେଶ୍ୱର ସତ୍‌ସଙ୍ଗୀ ମହଲରେ ସମସ୍ତଙ୍କର ପ୍ରିୟପାତ୍ର ହୋଇଉଠିଲା । ସତ୍‌ସଙ୍ଗର ଅଧିବେଶନଗୁଡ଼ିକରେ 'ସତ୍ୟାନୁସରଣ' ପାଠ କରିବା ଏବଂ ଆବଶ୍ୟକସ୍ଥଳେ ଯାଜନ ମାଧ୍ୟମରେ ଶ୍ରୀଶ୍ରୀଠାକୁରଙ୍କ ଭାବଧାରା ପରିବେଷଣ କରିବାର ଦେଖିଛି । ଏତେ ଅଳ୍ପ ବୟସରେ ତାହାର ଗଭୀର ଇଷ୍ଟବୋଧ ଏବଂ

ସ୍ୱଚ୍ଛଳ ପ୍ରକାଶଭଙ୍ଗୀ ତାହାର ସ୍ୱନାମଧନ୍ୟ ପିତୃଦେବଙ୍କ କଥାହିଁ ସ୍ମରଣ କରାଇ ଦେଉଥିଲା । ଗୋଟିଏ ଛୋଟ ଘଟଣା ମନେପଡୁଛି । ଥରେ ତାହାକୁ ଯାଜନ କରିବା କଥା କହିବାକୁ ଯାଇ ଦେଖିଲି, ସେ ଅଫିସର୍ ପୋଷାକ ପ୍ୟାଣ୍ଟ-ସାର୍ଟ ପିନ୍ଧି ଆସିଛି । ସତ୍‌ସଙ୍ଗ ଅନୁଷ୍ଠାନ ଉଦ୍‌ଯାପିତ ହେବା ପରେ ମୁଁ ତାକୁ ଏକାନ୍ତରେ ଡାକି କହିଲି – "ସତ୍‌ସଙ୍ଗକୁ ଆସିଲାବେଳେ ଶ୍ରୀଶ୍ରୀଠାକୁର ପସନ୍ଦ କରୁଥିବା ପୋଷାକ ଧୋତି ଏବଂ ହାଫ୍ ପଞ୍ଜାବୀ, ଅଧବା ଧଳା ଟ୍ରାଉଜର ଏବଂ ହାଫ୍ ପଞ୍ଜାବୀ ପିନ୍ଧି ଆସିବା ଉଚିତ । କାରଣ ବେଳେ ବେଳେ ତୁମକୁ ସତ୍‌ସଙ୍ଗରେ ସକ୍ରିୟ ଭୂମିକା ଗ୍ରହଣ କରିବାର ଆବଶ୍ୟକତା ପଡ଼ିପାରେ । ବିନମ୍ର ଭାବରେ ନିଜର ତ୍ରୁଟି ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପରିସ୍ଥିତିରେ ପଡ଼ି ନିଜର ଅକ୍ଷମତା ଦୃଷ୍ଟିରୁ ଏପରି ଭୁଲ ହେଲା । ଅର୍ଥାତ୍ ଅଫିସ୍‌ରେ ବିଳମ୍ବ ହେବାରୁ ଘରକୁ ନ ଫେରି ସିଧାସଳଖ ସତ୍‌ସଙ୍ଗକୁ ଆସିବାକୁ ପଡ଼ିଲା । ତେଣୁ ପୋଷାକ ପରିବର୍ତ୍ତନ କରିବାର ସୁଯୋଗ ନ ଥିଲା ବୋଲି ଜଣାଇଲା । କିନ୍ତୁ ତାହାପରେ ମୁଁ ଲକ୍ଷ୍ୟ କରି ଖୁସି ହେଲି ଯେ, ସେ ପାରତପକ୍ଷେ ଆଉ ପ୍ୟାଣ୍ଟ ସାର୍ଟ ପିନ୍ଧି ସତ୍‌ସଙ୍ଗରେ ଯୋଗ ଦେଉ ନ ଥିଲା । ତାହାର ଏପରି ଶ୍ରେୟାନୁବର୍ତ୍ତିତା ଏବଂ ଗ୍ରହଣ କ୍ଷମତାର ନିଦର୍ଶନ ଆମ ସମସ୍ତଙ୍କୁ ତୃପ୍ତି ପ୍ରଦାନ କରିଥିଲା । ଗୋଟିଏ ସୁନ୍ଦର ଫୁଲ ଭଳି କ୍ରମବିକଶିତ ହେଉଥିଲା ତାହାର ଜୀବନ । ଉପଯୁକ୍ତ ସମୟରେ ପିତୃଦେବ ତାହାର ବିବାହ ସୁସମ୍ପନ୍ନ କଲେ । ଜଗତ୍‌ସିଂହପୁର ଜିଲ୍ଲା ମାଣପୁର ନିବାସୀ ଶ୍ରଦ୍ଧେୟ ହେମନ୍ତ କୁମାର ଦାଶ ମହାଶୟଙ୍କ ସୁପୁତ୍ରୀ ସ୍ମୃତିରେଖାକୁ । ଯେପରି ବିଧାତା ରଶ୍ମୀଶ ନିମନ୍ତେହିଁ ସୃଜନ କରିଥିଲେ । ଅପୂର୍ବ ରୂପ, ଗୁଣବତୀ, ସୁଶିକ୍ଷିତା, ସ୍ୱାମୀ ଅନୁବର୍ତ୍ତିନୀ, ଗୁରୁ-ଗୁରୁଜନଙ୍କ ପ୍ରତି ଶ୍ରଦ୍ଧାଶୀଳା ଏହି କନ୍ୟା କାହାରି ପ୍ରଶଂସାର ଅପେକ୍ଷା ରଖେ ନାହିଁ । ପରମପିତାଙ୍କ ଦୟାରୁ ରଶ୍ମୀଶର ଜୀବନ ସୁନ୍ଦର, ସାବଲୀଳ ଛନ୍ଦରେ ପୂର୍ଣ୍ଣତ୍ୱ ଆଡ଼କୁ ଅଗ୍ରସର ହୋଇ ଚାଲିଲା । ତଦୁପରି ତାହାର ଇଷ୍ଟପ୍ରାଣତା ଏବଂ କର୍ମନିଷ୍ଠାର ସାକ୍ଷ୍ୟସ୍ୱରୂପ ଗତ ୨୦୧୩ ମସିହା ଏପ୍ରିଲ୍ ଉତ୍ସବରେ ପରମ ପୂଜ୍ୟପାଦ ଆଚାର୍ଯ୍ୟଦେବ ତାହାକୁ ଯାଜକର ପବିତ୍ର ପାଞ୍ଜା ପ୍ରଦାନପୂର୍ବକ ଆଶୀର୍ବାଦ କରନ୍ତି, ମନେ

ହେଲା, ଯେପରି ଜୀବନର ଇପ୍ସିତ ସମ୍ଭାବନାଗୁଡ଼ିକ ସେ ଏକପ୍ରକାର ଅନାୟାସରେ ଅଧିଗତ କରିଚାଲିଲା । ଶ୍ରଦ୍ଧେୟ ହୃଷିଦା ମୋ ନିକଟରେ ଗୋଟିଏ ଘଟଣା ବ୍ୟକ୍ତ କରିଥିଲେ, ଯେଉଁଥିରୁ ତାହାର ଅସ୍ଖଳିତ ପିତୃନିଷ୍ଠାର ପରିଚୟ ପାଇ ମୁଁ ମୁଗ୍ଧ ହୋଇଥିଲି । ଏହିପରି ଜୀବନଟି ତାହାର ଯୌବନର ମଳୟାନିଳରେ ଭାସି ଭାସି ଚାଲୁଥିଲାବେଳେ ହଠାତ୍ ଯେପରି ବିନା ମେଘରେ ବଜ୍ରପାତ ଘଟିଲା ।

ସେଦିନ ଥିଲା ଅଗଷ୍ଟ ମାସ ୧୮ ତାରିଖ ୨୦୧୪ ମସିହା ସୋମବାର ପବିତ୍ର ନନ୍ଦୋତ୍ସବ । ଘରେ ଘରେ ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା । ପୂର୍ବାହ୍ନ ପ୍ରାୟ ଦଶଟା ସମୟରେ ମୋର ସତୀର୍ଥ ଶ୍ରଦ୍ଧେୟ ଜଗନ୍ନାଥଭାଇ ହଠାତ୍ ମୋତେ ଫୋନ୍‌ରେ ସମ୍ବାଦ ଦେଲେ, ସେଦିନ ସକାଳୁ ରବୀଶର ହୃଦ୍‌ଘାତରେ ଦେହାନ୍ତ ହୋଇଯାଇଛି । ତାଙ୍କ କଥା ଶୁଣି ମୁଁ ସ୍ତମ୍ଭୀଭୂତ ହୋଇଗଲି । ତତ୍‌କ୍ଷଣାତ୍ ଜଣେ ବନ୍ଧୁଙ୍କ ସହିତ ଧାଇଁଗଲି କ୍ୟାପିଟାଲ ଡାକ୍ତରଖାନାକୁ । ସେତେବେଳକୁ ରବୀଶର ମରଶରୀର ରହିଛି ମଗର ଏ.ସି. ଚେମ୍ବରରେ । ଦେଖିଲି ଶ୍ରଦ୍ଧେୟ ହୃଷିଦାଙ୍କୁ – ଦେଖିଲି ଆଉ ଆଶ୍ଚର୍ଯ୍ୟ ହେଲି । ରବୀଶର ଭଉଣୀ, ଭିଣୋଇ ଏବଂ ଅନ୍ୟାନ୍ୟ ଆତ୍ମୀୟମାନଙ୍କ ଆଖିରୁ ଝରୁଥିଲା ଅବିରତ ଅଶ୍ରୁଧାରା । ମାତ୍ର ହୃଷିଦା ଥିଲେ ଅବିଚଳିତ, ଶାନ୍ତ ଏବଂ ଦୃଢ଼ । ଯନ୍ତ୍ରବତ୍ ଧୀର ଭାବରେ ସମସ୍ତ କର୍ତ୍ତବ୍ୟ ସମ୍ପାଦନ କରିଚାଲିଥିଲେ । ଭାବିଲି, ଇଏ କେଉଁ ପ୍ରକାର ମଣିଷ – ରକ୍ତମାଂସର ମଣିଷ ନା ଲୁହାର ମଣିଷ ? ହଠାତ୍ ତାଙ୍କ ନିକଟକୁ ଯିବାକୁ ସାହସ ହେଲା ନାହିଁ । କାରଣ ମୁଁ ଜାଣିଥିଲି ତାଙ୍କର ଅସୀମ ଧୈର୍ଯ୍ୟ, ଦୃଢ଼ତା ଏବଂ ନିର୍ବିକାର ଅଭିବ୍ୟକ୍ତିର ଅନ୍ତରାଳରେ ଆଗ୍ନେୟଗିରିର ଉତ୍ତପ୍ତ ଲାର୍ଭା ଭଳି ଦୁଃଖ ଏବଂ ହାହାକାରର ଯେଉଁ ଦବଦାହ ଲୁଚି ରହିଛି, ତାହାକୁ ମୁଁ ସାମ୍ନା କରିପାରିବି ନାହିଁ । ମୋ ଜାଣିବାରେ ଏହି ମହାସର୍ବନାଶର କୌଣସି ସାନ୍ତ୍ୱନା ନାହିଁ – କେବଳ ପରମପିତାଙ୍କ ନିକଟରେ ପ୍ରାର୍ଥନା କରିବା ବ୍ୟତିରେକେ, ହୃଷିଦା ଏବଂ ତାଙ୍କ ସହଧର୍ମିଣୀ ସ୍ନେହମୟୀ ମାଳତୀ ଦେବୀଙ୍କ ଅନ୍ତରରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା, ଲୌକିକ ଜଗତରେ କାହାରି ସାଧ ନାହିଁ, ତାହାକୁ ପୂରଣ

  

କରିବାପାଇଁ । କେବଳମାତ୍ର ପରମଦୟାଲ ଶ୍ରୀଶ୍ରୀଠାକୁର ହିଁ ନିଜକୁ ଦେଇ ଏହି ଶୂନ୍ୟତା ପୂରଣ କରିପାରନ୍ତି । ସେ ସନ୍ତାନହରାର ସନ୍ତାନର ଅଭାବ ପୂରଣ କରିପାରନ୍ତି – ପିତୃମାତୃହରାର ପିତାମାତାଙ୍କ ଅଭାବ ପୂରଣ କରିପାରନ୍ତି । ଏହାର ପ୍ରମାଣ ହେଲା – ହୃଷିଦା ଏଭଳି ଦାରୁଣବଜ୍ରାଘାତ ସହ୍ୟକରି ମଧ ତିଳେମାତ୍ର ସ୍ୱପଥରୁ ବିଚ୍ୟୁତ ହୋଇ ନାହାନ୍ତି । ପୂର୍ବଭଳି ଚାଲିଛି ତାଙ୍କର ଇଷ୍ଟକର୍ମ, ସତ୍‌ସଙ୍ଗରେ ଯୋଗଦାନ ଏପରିକି ସତ୍‌ସଙ୍ଗର ସାଙ୍ଗଠନିକ କର୍ମ ଯାହା ସେ ଚିରଦିନ କରିଆସିଛନ୍ତି, ସବୁକିଛି ପୂର୍ବବତ୍ ସମ୍ପାଦନ କରିଚାଲିଛନ୍ତି । ତାଙ୍କର ଅସୀମ ଧୈର୍ଯ୍ୟ, ସହ୍ୟ ଏବଂ ଦୃଢ଼ ଇଷ୍ଟାନୁରାଗକୁ ମୁଁ ଆନ୍ତରିକ ଶ୍ରଦ୍ଧା ନ ଜଣାଇ ରହିପାରୁ ନାହିଁ । ରଦ୍ଧୀଶର-ଚତୁର୍ଦ୍ଦଶାହ ଦିନ ଯେଉଁ ବିରାଟ ସତ୍‌ସଙ୍ଗ ଅନୁଷ୍ଠିତ ହୋଇଥିଲା, ସେଥିରେ ହୃଷିଦାଙ୍କ ଇଚ୍ଛାକ୍ରମେ ମୋତେ ହିଁ ପୌରୋହିତ୍ୟ କରିବାକୁ ପଡ଼ିଥିଲା । ଦୁଇଘଣ୍ଟା ମଧ୍ୟରେ ଆନୁମାନିକ ସତୁରି ପଚସ୍ତରି ଜଣ ଗୁଣମୁଗ୍ଧ ସହକର୍ମୀ, ବନ୍ଧୁବର୍ଗ, ପ୍ରତିବେଶୀ ଏବଂ ଶିକ୍ଷକ ତଥା ସହପାଠୀବୃନ୍ଦ ସଂକ୍ଷେପରେ ଅଶ୍ରୁଳ କଣ୍ଠରେ ନିଜ ନିଜର ଭାବାବେଗ ବ୍ୟକ୍ତ କରିଥିଲେ । ସେଥର ଏବଂ ତାହା ପରେ ମୁଁ ଯେବେ ଲଥାଙ୍ଗ ଯାଇଛି, ହୃଷିଦାଙ୍କ ଘରକୁ ଯାଇ ତାଙ୍କର ଏବଂ ଶ୍ରଦ୍ଧେୟା ମାଳତୀ ମା'ଙ୍କର ଦୁଃଖଭାର ଲାଘବ କରିବାକୁ ଚେଷ୍ଟା କରି ବିଫଳ ହୋଇଛି । କେବଳ ପରମଦୟାଲ୍‌ଙ୍କ ନିକଟରେ ନୀରବ ପ୍ରାର୍ଥନା କରିଛି ସେମାନଙ୍କ ହୃଦୟର ଜ୍ୱାଳାକୁ ଶୀତଳ କରିବାପାଇଁ ।

କିନ୍ତୁ ଏପରି କାହିଁକି ହେଲା – ଏପରି କାହିଁକି ହୁଏ ? ମୁଁ ଯେତେଟା ଜାଣେ ରଦ୍ଧୀଶର ଅଥବା ତାହାର ଆଦର୍ଶ ପିତାମାତାଙ୍କର ଏପରି କୌଣସି କର୍ମଦୋଷ ନ ଥିଲା, ଯାହାଯୋଗୁଁ ଏପରି ମହାଦଣ୍ଡ ଆମକୁ ଭୋଗିବାକୁ ହେଲା । ସତ୍‌ସଙ୍ଗ ଜଗତରେ ଏଭଳି ପ୍ରଶ୍ନ ବାରମ୍ବାର ଅନେକଙ୍କ ମନକୁ ଆଲୋଡ଼ିତ କରିଛି । ଜଣେ ଇଷ୍ଟନିଷ୍ଠ, ସଦାଚାରୀ, ସଚ୍ଚରିତ୍ର, କର୍ମନିଷ୍ଠ, ସଦାଳାପୀ, ସ୍ୱାସ୍ଥ୍ୟବାନ୍ କର୍ମୀର କାହିଁକି ଅକାଳମୃତ୍ୟୁ ହୁଏ ? ଇଂରାଜୀରେ ଗୋଟିଏ କଥା ଅଛି – "Those whom Gods love dies young." ଅର୍ଥାତ୍ ଯାହାଙ୍କ

ମଧ୍ୟରେ ଦେବୋପମ ଗୁଣର ପ୍ରକାଶ ଦେଖାଯାଏ, ସେଭଳି ବ୍ୟକ୍ତି ଅପରିଣତ ବୟସରେ ସଂସାର ତ୍ୟାଗ କରନ୍ତି । ଯେପରିକି ଆଚାର୍ଯ୍ୟ ଶଙ୍କର ଅଥବା ସ୍ୱାମୀ ବିବେକାନନ୍ଦ ପ୍ରଭୃତି । ଶ୍ରଦ୍ଧେୟ ହୃଷିଦା ଥରେ କହୁଥିଲେ, ସେ ଜଣେ ଲବ୍ଧପ୍ରତିଷ୍ଠ ଜ୍ୟୋତିଷଙ୍କୁ ରଥୀଶର ଜାତକ ଦେଖାଇଥିଲେ । ସେ କହିଥିଲେ – "ଏ ଜଣେ ଦେବସନ୍ତାନ । କେତେଦିନ ଆମ ଭାଗ୍ୟରେ ରହିବେ କହିହେବ ନାହିଁ ।" କିନ୍ତୁ ଏପରି ହୁଏ କାହିଁକି ? ସଂସାରରେ କ'ଣ କେବଳ ପାପୀ, ଦୁରାଚାରୀ ଏବଂ ଦୁଷ୍ଟ ବ୍ୟକ୍ତିମାନେ ଦୀର୍ଘାୟୁ ହୋଇ ବଞ୍ଚିରହିବେ ଏବଂ ଉତ୍କୃଷ୍ଟ ଚରିତ୍ରର ସତ୍‌ଲୋକମାନେ ଅଳ୍ପାୟୁ ହୋଇ ମୃତ୍ୟୁବରଣ କରିବେ ? ତା'ହେଲେ ଦୁନିଆ ଚାଲିବ କିପରି ? ଶ୍ରୀଶ୍ରୀଠାକୁର ମଧ୍ୟ ଏକଥାକୁ ସ୍ୱୀକାର କରନ୍ତି ନାହିଁ । ସେ କହନ୍ତି – "ତୁମେ ଦେବତା ଭଳି ଉଜ୍ଜ୍ୱଳ ଏବଂ ଜୀବନ-ଯଶ ଓ ବୃଦ୍ଧିରେ ଦୀପ୍ତିମାନ ହୋଇଉଠ ଏବଂ ଆୟୁତ ଆୟୁ ନେଇ ବଞ୍ଚିରୁହ ।" ଏହି ଅସମାହିତ ପ୍ରଶ୍ନଟିର ଯଥାଯଥ ଉତ୍ତର ମିଳିଛି ଶ୍ରୀଶ୍ରୀବଡ଼ଦାଙ୍କଠାରୁ । ଇଷ୍ଟପ୍ରସଙ୍ଗେ ପୁସ୍ତକରେ ଗୋଟିଏ ପ୍ରଶ୍ନୋତ୍ତର ଛଳରେ ସେ କହିଛନ୍ତି – "ଯାହାର କର୍ମଫଳ ଭୋଗ ଶେଷ ହୋଇଯାଏ, ପରମପିତା ତାହାକୁ ନିଜ ପାଖକୁ ନେଇଯା'ନ୍ତି । କାରଣ କର୍ମଫଳ ଶେଷ ହୋଇଗଲା ପରେ ଅଧିକ ଦିନ ବଞ୍ଚିରହି ନୂଆ କର୍ମଫଳ ସୃଷ୍ଟି ହେବା ସେ ଚାହାନ୍ତି ନାହିଁ ।" ତେଣୁ ଦେଖାଯାଏ, ଅନେକ ସମୟରେ ସୁନ୍ଦର ଦେବୋପମ ଚରିତ୍ରର ବ୍ୟକ୍ତିମାନେ ଅକାଳ ମୃତ୍ୟୁବରଣ କରନ୍ତି । ପ୍ରକୃତରେ କର୍ମଫଳ ଭୋଗ କରିବାପାଇଁହିଁ ଜୀବାତ୍ମା ଶରୀର ଧାରଣ କରିଥାଏ । କର୍ମଫଳ ଶେଷ ହୋଇଗଲେ ଆଉ ଶରୀର ରହିବାର ପ୍ରୟୋଜନ କ'ଣ ? ଆହୁରି ମଧ୍ୟ ସେ କହିଛନ୍ତି – ସଂସାରରେ ଅନେକ ଲୋକ ପୁଣି ସ୍ୱେଚ୍ଛାରେ ମୃତ୍ୟୁବରଣ କରିବାକୁ ଚାହାନ୍ତି – ଭାବନ୍ତି, ଏ ସଂସାର ଅନିତ୍ୟ, ଈଶ୍ୱରହିଁ ଏକମାତ୍ର ସତ୍ୟ । ତେଣୁ ଭାବର ଆବେଗରେ ସେମାନେ ପରମପିତାଙ୍କଠାରେ ଲୟ ହୋଇଯିବାର ଇଚ୍ଛା କରନ୍ତି ଏବଂ ପରମପିତା ତାଙ୍କର ସେ ଇଚ୍ଛା ମଞ୍ଜୁର କରିଦିଅନ୍ତି । ଆସାମର ବିଶିଷ୍ଟ ଋତ୍ୱିକ ସ୍ୱର୍ଗତ ରବୀନ୍ଦ୍ରନାଥ ରାୟଙ୍କ ଅକାଳମୃତ୍ୟୁ ସମ୍ବନ୍ଧରେ ଶ୍ରୀଶ୍ରୀବଡ଼ଦା' କହିଛନ୍ତି – "ରବୀନ୍ ନିଜେ ହିଁ ରହିବାକୁ ଚାହିଁଲା ନାହିଁ । ଠାକୁରଙ୍କ ସହିତ ମିଶିଯିବାକୁ ଇଚ୍ଛା କଲା ।" ଏଇ ତ ସେଦିନ, ପୂଜନୀୟ

ସନ୍ତୁଦା'ଙ୍କର ଅକାଳ ବିୟୋଗରେ ବ୍ୟଥିତ ହୋଇ ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦା କହିଥିଲେ – "ସନ୍ତୁର ଇଛାମୃତ୍ୟୁ ।" ତେଣୁ ଶ୍ରୀଶ୍ରୀବଡ଼ଦା' ଆମକୁ ସାବଧାନ କରିଦେଇ କହିଛନ୍ତି – "ଠାକୁରଙ୍କ ସହିତ ମିଶିଯିବାର ଇଛା ଭଲ ନୁହେଁ । ଆମେ ଚିନି ଖାଇବାକୁ ଚାହୁଁ, ଚିନି ହେବାକୁ ଚାହୁଁନା । ଆମେ ଅନନ୍ତକାଳ ବଞ୍ଚିରହି ପରମପିତାଙ୍କ କର୍ମ କରିବାକୁ ଚାହୁଁ ।" ଅର୍ଥାତ୍ ଭକ୍ତି, ଶ୍ରଦ୍ଧା, ଇଷ୍ଟପ୍ରାଣତା ଏବଂ ଇଷ୍ଟକର୍ମନିଷ୍ଠା ଭିତର ଦେଇ ଆମେ ପରମପିତାଙ୍କ ଉପଭୋଗ କରିବାକୁ ଚାହୁଁ ।" ତେଣୁ 'ସତ୍ୟାନୁସରଣ'ରେ ଶ୍ରୀଶ୍ରୀଠାକୁର ମଧ୍ୟ କହିଛନ୍ତି – "ବିସ୍ତାରରେ ଅସ୍ତିତ୍ୱ ହରାଅ; କିନ୍ତୁ ନିଭିଯାଅ ନାହିଁ । ବିସ୍ତାର ହିଁ ଜୀବନ, ବିସ୍ତାର ହିଁ ପ୍ରେମ ।" ସେ ତାଙ୍କର ଅସଂଖ୍ୟ ବାଣୀସମ୍ଭାର ମାଧ୍ୟମରେ ଆମକୁ ବଞ୍ଚିବା-ବଢ଼ିବାର ଜୀବନୀୟ କୌଶଳଗୁଡ଼ିକ ଅତି ଯତ୍ନ ସହକାରେ ଶିକ୍ଷା ଦେଇଛନ୍ତି । ସେ ହେଲେ ଜୀବନର ଦେବତା, ଜୀବନର ଉଦ୍‌ଗାତା, ଜୀବନର ପ୍ରବକ୍ତା । ତେଣୁ ତାଙ୍କ ଶ୍ରୀମୁଖରୁ ଧ୍ୱନିତ ହୋଇଛି – "ବାଁଚ, ବାଁଚ, ବାଁଚ ତୁମି ପରିବେଶର ସବକେ ନିଏ/ସବ୍‌କେ ନିଏ ଏଗିୟେ ଚଲ ବାଁଚା-ବାଢ଼ାର ତାପସ ହୟେ ।" ପରକାଳରେ ଆମର ଗତିର ସମସ୍ତ ଦାୟିତ୍ୱ ସେ ନିଜେ ହିଁ ସ୍ୱେଚ୍ଛାରେ ଗ୍ରହଣ କରିଛନ୍ତି । କହିଛନ୍ତି – "ଯେଉଁମାନେ ମୋର ଆଶ୍ରିତ, ସେମାନେ ମୋ ପାଖକୁ ଆସିବେ ଏବଂ ସେମାନଙ୍କୁ ମୁଁ ପୁନର୍ବାର ଜନ୍ମ ଦେବି ।" ତେଣୁ ଆଉ ଚିନ୍ତା କାହିଁକି ? ଇହଜୀବନରେ ଆମେ ଯେପରି ତାଙ୍କୁ ଆଶ୍ରୟ କରି ରହିଛେ, ପର ଜୀବନରେ ମଧ୍ୟ ତାଙ୍କରି ପାଖରେ ରହିବା । ଆମର ପ୍ରିୟ କୁମର ରଦ୍ଧୀଶ ତାଙ୍କ ନିକଟରେ ହିଁ ଅଛି – ଏକଥା ଆମେ ଜାଣି ନ ପାରିଲେ ମଧ୍ୟ ସତ୍ୟ । ଏ ସମ୍ବନ୍ଧରେ ସ୍ୱାମୀ ବିବେକାନନ୍ଦ ଗୋଟିଏ ସୁନ୍ଦର କଥା କହିଛନ୍ତି – "ତବ ଗତି ନାହିଁ ଜାନି/ମମ ଗତି ତାହାଓ ନାଜାନି/କେବା ଚାୟ ଜାନିବାରେ ?/ଦାସ ତବ ସତତ ପ୍ରସ୍ତୁତ ସାଧିତେ ତୋମାର କାଜ୍ ।" ଶ୍ରଦ୍ଧେୟ ହୃଷିଦା ଏବଂ ମୋ ଭଳି, ଜୀବନର ଅପରାହ୍ନରେ ପଦାର୍ପଣ କରିଥିବା କର୍ମୀମାନଙ୍କ ପାଇଁ ଏହାହିଁ ଚରମ ସତ୍ୟ ।

॥ ବନ୍ଦେ ପୁରୁଷୋତ୍ତମମ୍ ॥



# ଅଭୁଲା ସ୍ମୃତି

ସତ୍ୟବାନ ତ୍ରିପାଠୀ (ସ.ପ୍ର.ର. ସତ୍‌ସଙ୍ଗ)
ଭୂତତ୍ତ୍ୱ ବିଜ୍ଞାନ ବିଭାଗ
ଆଦିକବି ସାରଳାଦାସ ମହାବିଦ୍ୟାଳୟ, ତିର୍ତ୍ତୋଲ

ଆଦିକବି ସାରଳାଦାସ ମହାବିଦ୍ୟାଳୟର ପ୍ରାକ୍ତନ ଉଦୀୟମାନ ଛାତ୍ର ଥିଲେ ସ୍ୱର୍ଗତ ରଦ୍ଧୀଶ ଆଚାର୍ଯ୍ୟ । ୨୦୦୫ ମସିହାରେ ପ୍ରାଣୀବିଜ୍ଞାନ (ସମ୍ମାନ) ସ୍ନାତକ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ ରଦ୍ଧୀଶ । ଏହି ମହାବିଦ୍ୟାଳୟରେ ପାଞ୍ଚ ବର୍ଷ ପାଠ ପଢ଼ିବା ସମୟରେ ସେ ସମସ୍ତ ଶିକ୍ଷକଙ୍କର ପ୍ରିୟ ଛାତ୍ର ଥିଲେ । ସମସ୍ତେ ତାଙ୍କୁ ଶ୍ରଦ୍ଧା କରୁଥିଲେ । ଏଇଥିପାଇଁ ଯେ ସେ ଏକାଧାରରେ ଅତ୍ୟନ୍ତ ସରଳ, ଶାନ୍ତ, ମିଷ୍ଟଭାଷୀ, ନିଃସ୍ୱାର୍ଥପର ଏବଂ ଉଚ୍ଚାଭିଳାଷୀ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ।

ତା'ର ସେହି ହସ ହସ ମୁହଁ ଏବେବି ମନେପଡୁଛି । ବ୍ୟକ୍ତିଗତ ଭାବରେ ରଦ୍ଧୀଶ ଆନୁଷ୍ଠାନିକ ଭାବରେ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ମନ୍ତ୍ରପୂତଃ ଶିଷ୍ୟ ହୋଇଥିବାରୁ ତା'ର ମୋର ସମ୍ପର୍କ ଅତ୍ୟନ୍ତ ଭାବରେ ଗଭୀର ଥିଲା । ମୁଁ ତାକୁ ଯେଭଳି ସାନଭାଇ ପରି ଭଲ ପାଉଥିଲି, ସେ ମଧ୍ୟ ଅନୁରୂପ ଭାବରେ ମୋତେ ବଡ଼ଭାଇର ସମ୍ମାନ ଦେଉଥିଲା । ସମୟ ପାଇଲେ ସେ ମୋ ପାଖକୁ ଆସେ ଏବଂ ଠାକୁରଙ୍କର କଥା ଆଳାପ-ଆଲୋଚନା କରେ । ସେଦିନର ତା'ର କଥା ମୋର ମନେପଡୁଛି । କଥା ପ୍ରସଙ୍ଗେ ସେ କହିଲା – "ଭାଇନା ! ଆପଣ ସତ୍‌ସଙ୍ଗରେ ଆଲୋଚନା କଲାବେଳେ ଶ୍ରୀଶ୍ରୀଠାକୁରଙ୍କର ବାସ୍ତବ କଥା ଏବଂ ଦୀର୍ଘବାଣୀ କୁହନ୍ତି, ମୋତେ ବହୁତ ଭଲ ଲାଗେ । ଠାକୁରଙ୍କର କଥା ବ୍ୟତୀତ ଆପଣ କୌଣସି ପୁରାଣ କିମ୍ବା କାଳ୍ପନିକ କଥା କୁହନ୍ତି ନାହିଁ ।"

ସମୟର ଗତି ବିଚିତ୍ର । ରାହାମା ସତ୍‌ସଙ୍ଗ ବିହାରରେ ଥିବା ସମୟରେ ହଠାତ୍ ରବ୍ବିଶର ଆକସ୍ମିକ ମୃତ୍ୟୁ ଖବର ଶୁଣିବାକୁ ପାଇଲି । ମୁଁ ଏହାକୁ ସହଜରେ ଗ୍ରହଣ କରିପାରିଲି ନାହିଁ । କିନ୍ତୁ ଏହା ଥିଲା ପ୍ରକୃତରେ ସତ୍ୟ । ତା'ର ଶେଷ ଦର୍ଶନ କରିବାପାଇଁ ମୁଁ ତା'ର ଜନ୍ମଭୂମି ଲଥାଙ୍ଗ ଯାଇ ପହଞ୍ଚିଥିଲି । ସମସ୍ତ ଲଥାଙ୍ଗ ଅଞ୍ଚଳ ଲୋକାରଣ୍ୟ । ସମସ୍ତେ ପ୍ରାୟ ମର୍ମାହତ ଏବଂ ଆଖି ଲୋତକପୂର୍ଣ୍ଣ । ଯାହା ଭାଗବତରେ ଅଛି –

"ପ୍ରାଣୀର ଭଲମନ୍ଦ ବାଣୀ ।
ମରଣ କାଳେ ତାହା ଜାଣି ।।"

ଏବଂ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଲେଖିଛନ୍ତି –

"ତୁମେ ଯେବେ ଆସିଥିଲ ଭବେ
ତୁମେ ଏକା କାନ୍ଦିଥିଲ ହସିଥିଲେ ସର୍ବେ ।
ଏଭଳି ଜୀବନ ତୁମେ କରିବ ଯାପନ
ମରଣେ ହସିବ ତୁମେ କାନ୍ଦିବ ଭୁବନ ।"

ପ୍ରକୃତରେ ତାହାହିଁ ବାସ୍ତବାୟିତ ହୋଇଥିଲା ଜୀବନରେ । ମୋର ମନେହୁଏ, ସମସ୍ତ ମାୟା ବନ୍ଧନକୁ ଅତିକ୍ରମ କରି ସ୍ୱର୍ଗତ ରବ୍ବୀଶ ଦୟାଲଧାମକୁ ଯାତ୍ରା କରିଛି । ଏହାହିଁ ଶ୍ରୀଶ୍ରୀଠାକୁରଙ୍କର ଆଶୀର୍ବାଦ । ସତରେ କହିବାକୁ ଗଲେ ରବ୍ବୀଶ ଥିଲା ଶ୍ରୀଶ୍ରୀଠାକୁରଙ୍କର ମନଲାଖି ମଣିଷ, ଜଣେ ସୁଯୋଗ୍ୟ ବ୍ୟକ୍ତି । ତାଙ୍କର ପିତା ପୂଜ୍ୟ ହୃଷୀକେଶ ଆଚାର୍ଯ୍ୟ (ସ.ପ୍ର.ର) ଏବଂ ତାଙ୍କର ପରିବାରର ପ୍ରତ୍ୟେକ ସଦସ୍ୟଙ୍କୁ ଏହି ଅପୂରଣୀୟ ଦୁଃଖକୁ ସହିବାପାଇଁ ପରମପିତା ଧୈର୍ଯ୍ୟ ଦିଅନ୍ତୁ । ଶେଷରେ ରବ୍ବୀଶର ଅମର ଆତ୍ମାର ସଦ୍‌ଗତିପାଇଁ ପରମପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କର ଶ୍ରୀପାଦପଦ୍ମେ ପ୍ରାର୍ଥନା କରୁଛି ।



# ସେ ଏକ ଅମ୍ଳାନ ପ୍ରତିଭା

**ବିଷ୍ଣୁଚରଣ ସ୍ୱାଇଁ**
ପ୍ରାଣୀଚିକିତ୍ସା-ବିଜ୍ଞାନ କଲେଜ
ଓ.ୟୁ.ଏ.ଟି., ଭୁବନେଶ୍ୱର

କାଲି ଭଳି ମନେପଡ଼େ, ସେଦିନ ୨୦୧୦ ସେପ୍ଟେମ୍ବର ମାସ ୧୩ ତାରିଖ ରତ୍ନୀଶଙ୍କ ସହିତ ମୋର ପ୍ରଥମ ଦେଖାହୁଏ କୃଷି ବିଶ୍ୱବିଦ୍ୟାଳୟ ଅଭ୍ୟର୍ଥନା ପ୍ରକୋଷ୍ଠ ସମ୍ମୁଖରେ । ଏହାର କିଛିଦିନ ପୂର୍ବରୁ ମୋର ପୂଜ୍ୟ ସହ-ପ୍ରତି-ଋତ୍ୱିକ୍ ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ ମହାଶୟ ଫୋନ୍ ମାଧମରେ ମୋତେ କୁହନ୍ତି – ମୋ ପୁଅ ରତ୍ନୀଶ College of Basic Science, OUAT ଚାକିରିରେ ଯୋଗ ଦେବାର ଅଛି । ସେ ଆଜି ଭୁବନେଶ୍ୱର ଯାଉଛି । କ'ଣ କରିବାକୁ ହେବ – ବିଷ୍ଣୁଭାଇ ! ଆପଣ ଟିକେ ବୁଝିବେ ।" ତଦନୁଯାୟୀ ମୁଁ ରତ୍ନୀଶଙ୍କୁ ଦେଖାକରିବାପାଇଁ କୃଷି ବିଶ୍ୱବିଦ୍ୟାଳୟରେ ଉପସ୍ଥିତ ଥାଏ । ମୋର ତାଙ୍କ ସହିତ କେବେ ପରିଚୟ ନ ଥାଏ । ଅବଶ୍ୟ ତାଙ୍କୁ ଚିହ୍ନିବାରେ ମୋର କୌଣସି ଅସୁବିଧା ନ ଥିଲା, କାରଣ ସେ ଗୌରବର୍ଣ୍ଣର ଯୁବକ, ସୁନ୍ଦର ସୁଢ଼ଳ ଦୀପ୍ତିମୟ ଚେହେରା, ଠିକ୍ ହୃଷୀଦା'ଙ୍କ ପରି । ତଥାପି ମୁଁ ତାଙ୍କୁ ଦେଖି ନ ଚିହ୍ନିଲାପରି ରହିଲି । ରତ୍ନୀଶ କିନ୍ତୁ ମୋତେ 'ମଉସା' ସମ୍ବୋଧନପୂର୍ବକ ହସ ହସ ମୁଖରେ 'ଜୟଗୁରୁ' ବୋଲି ସମ୍ବୋଧନ କଲେ । ସେତେବେଳେ ମୁଁ ତାଙ୍କୁ ପ୍ରଶ୍ନ କଲି – "ଆପଣ କ'ଣ ମୋତେ ଆଗରୁ ଚିହ୍ନିଥିଲେ ।" ଉତ୍ତରରେ ସେ କହିଲେ – "ମୋତେ ଅନୁଭବ ହେଲା, ଆପଣ ବିଷ୍ଣୁ ମଉସା ନିଶ୍ଚିତ ହୋଇଥିବେ ।"

ସେହିଦିନ ରତ୍ନୀଶ ଓ.ୟୁ.ଏ.ଟି. ଚାକିରିରେ ଯୋଗଦାନ କରନ୍ତି । ଏହା ଥିଲା ମୋର ତାଙ୍କ ସହିତ ପରିଚୟର ପ୍ରଥମ ସୋପାନ । ଦିନ ପରେ ଦିନ





ଯାଏ, ତାଙ୍କ ସହିତ ମୋର ଏକ ଭଲ ସମ୍ପର୍କ ଗଢ଼ିଉଠେ । ବାସ୍ତବରେ ସେ ଏତେ ଭଲ ମଣିଷ ଥିଲେ, ମୁଁ ନୁହେଁ ଯିଏ ବି ହେଉନା କାହିଁକି, ତାଙ୍କ ସହିତ ସୁସମ୍ପର୍କ ରଖିବ ତ ନିଶ୍ଚିତ । ସେ ଏକ ପ୍ରସ୍ଫୁଟିତ ସୁଗନ୍ଧରାଜ ଫୁଲଟି. ସବୁରି ଆଦରର ବ୍ୟକ୍ତି । ସେଭଳି ଜଣେ ସର୍ବଗୁଣ ସମ୍ପନ୍ନ ମଣିଷ ବୋଧେ ମୋ ଜୀବନରେ ଆଉ ଆସିବେ ନାହିଁ । ତାଙ୍କ କଥା ଭାବିଲେ ଆଖିରୁ ଲୋତକ ଆପଣାଛାଏଁ ଝରିପଡ଼େ । ଏପରି ଏକ ସମୟ ଆସେ, ସେ ମୋର ଅତି ନିକଟରେ ସରକାରୀ ବାସଗୃହଟିଏ ପାଇଥା'ନ୍ତି । ତାଙ୍କ ସହିତ ମୋର ପ୍ରାୟ ଯିବା ଆସିବା ଲାଗିଥାଏ । ଅତଏବ, ତାଙ୍କ ସହିତ ମୋର ବନ୍ଧୁତାର ସୁତାଖିଅ ମଜଭୁତ ହୋଇଯାଏ । ମୋର ପରିବାରର ପ୍ରତ୍ୟେକ ସଦସ୍ୟ ତାଙ୍କୁ ଖୁବ୍ ଭଲ ପାଆନ୍ତି । ସେ ଯାହାବି କରନ୍ତି, ମୋତେ ଟାଣି ରଖିବାରେ ଗୋଟେ ପ୍ରବଳ ଝୁଙ୍କ୍ ତାଙ୍କ ପାଖରେ ଥାଏ । ପ୍ରାୟ ମୋ ସହିତ ମିଶି ସତ୍‌ସଙ୍ଗ ଯିବା, ସରକାରୀ ହେଉ ବା ବ୍ୟକ୍ତିଗତ ସମସ୍ୟାର ଆଲୋଚନା କରିବା, ପ୍ରାୟ ସମସ୍ତ କଥା ମୋତେ କହିଥା'ନ୍ତି । ଘରେ ସତ୍‌ସଙ୍ଗ କରିବା କଥା ଉଠିଲେ ନାହିଁ ଶବ୍ଦ ତାଙ୍କଠାରୁ ଶୁଣିବାକୁ ମିଳେନା । ୟୁନିଟ୍-୮ ଜୋନ୍ ପ୍ରାୟ ସମସ୍ତ ଗୁରୁଭାଇମାନେ ତାଙ୍କୁ ଜାଣନ୍ତି ଓ ଖୁବ୍ ଆଦର କରିଥା'ନ୍ତି । ଏପରିକି ଅନ୍ୟ ସତ୍‌ସଙ୍ଗ ଜୋନ୍‌ରେ ମଧ୍ୟ ତାଙ୍କର ଆଦର ଥିଲା । କୃଷି ବିଶ୍ୱବିଦ୍ୟାଳୟର ସବୁବର୍ଗର କର୍ମଚାରୀ ପ୍ରାୟତଃ ତାଙ୍କୁ ଜାଣନ୍ତି ଓ ଖୁବ୍ ଭଲ ପାଆନ୍ତି । ନେତୃତ୍ୱ ନେବାର କଳା ମଧ୍ୟ ତାଙ୍କ ପାଖରେ ଥିଲା । ସେ ପ୍ରତିଟି ହୃଦୟରେ ଏକ ସ୍ୱତନ୍ତ୍ରତା ସୃଷ୍ଟି କରି ପାରିଥିଲେ । ସେ ଥିଲେ ଏକାଧାରରେ ଶାନ୍ତ, ଶିଷ୍ଟ, ପରୋପକାରୀ ଦରଦୀ ମଣିଷ । ସେ ତାଙ୍କ ନିଜର ଦୁଃଖ କଷ୍ଟ କେବେ ପ୍ରକାଶ କରନ୍ତି ନାହିଁ । ତାଙ୍କ ପରି ଭଲ ମଣିଷ ମୋ ଜୀବନରେ ମୁଁ ଖୁବ୍ କମ୍ ଦେଖିଛି । ସେ ଥିଲେ ଅତୀବ ପିତୃମାତୃ ଭକ୍ତ । ପରିବାର ପ୍ରତି ସେ ଅନେକ ଯତ୍ନଶୀଳ ଥିଲେ; ତଦନୁପାତିକ ସେ ଥିଲେ ଖୁବ୍ ଇଷ୍ଟାର୍ଥ ପରାୟଣ ବ୍ୟକ୍ତି । ପ୍ରକୃତରେ ସେ ମଣିଷ ନ ଥିଲେ, ସେ ଥିଲେ ଜଣେ ଦେବତା । ଅଳ୍ପଦିନପାଇଁ କୌଣସି କାରଣ ନିମିତ୍ତ ଜଣେ

ଅମ୍ଳାନ ପ୍ରତିଭା, ସର୍ବଗୁଣ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ । ତାଙ୍କ ବିଷୟରେ ଯେତେ ଲେଖିଲେ ବି କମ୍ ହେବ ।

ମୋର ବ୍ୟକ୍ତିଗତ ଅନୁଭୂତି, ଅତି ଭଲ ମଣିଷ ଏ ସଂସାର ବନ୍ଧନରେ ବେଶି ଦିନ ରହିପାରନ୍ତି ନାହିଁ । ତାଙ୍କର କର୍ମ ବନ୍ଧନ ଶୀଘ୍ର ସମାପ୍ତି ଘଟେ । ସେ ପୁନରାୟ ସ୍ୱସ୍ଥାନ ଗ୍ରହଣ କରନ୍ତି । ସୃଷ୍ଟିକର୍ତ୍ତା ମଙ୍ଗଳମୟ ତାଙ୍କର ଇଚ୍ଛା ହିଁ ମଙ୍ଗଳ ।

"ତୁମର ଇଚ୍ଛା ମଙ୍ଗଳ, ମୁଁ ଜାଣେନା କେଉଁଥିରେ ମୋର ମଙ୍ଗଳ ହେବ । ମୋ ଭିତରେ ତୁମର ଇଚ୍ଛାହିଁ ପୂର୍ଣ୍ଣ ହେଉ, ସେଥିପାଇଁ ତୁମେ ରାଜି ଥାଅ – ଆନନ୍ଦରେ ରହିବ, ଦୁଃଖ ତୁମକୁ ସ୍ପର୍ଶ କରିବ ନାହିଁ ।" (ସତ୍ୟାନୁସରଣ)

ପରମ କାରୁଣିକ ପରମଦୟାଲଙ୍କ ଶ୍ରୀଚରଣ ତଳେ ଏତିକି ପ୍ରାର୍ଥନା – ଯେ ଯେଉଁଠି ଥାଆନ୍ତୁ, ଭଲରେ ହିଁ ଥାଆନ୍ତୁ । ସଦା ତାଙ୍କର ରାତୁଳ ଚରଣ ତଳେ ସ୍ଥାନ ପାଆନ୍ତୁ ଓ ସେହି ଅମର ଆତ୍ମାର ସଦ୍‌ଗତି ହେଉ ।

ସର୍ବଶେଷରେ ସେହି ମହାନ୍ ଆତ୍ମାଙ୍କୁ ମୁଁ ଭକ୍ତିପୂତଃ ପ୍ରଣାମ ଜଣାଏ ।



# ଶେଫାଳି ଫୁଲ

**ମହେଶ୍ୱର ରାଉତ**
ଶିକ୍ଷକ, ଏମ୍.ଏସ୍. ଏକାଡେମୀ, ତିର୍ତ୍ତୋଲ

ସେଦିନ ଥିଲା ୨୦୧୪ ଅଗଷ୍ଟ ୧୮ । ସବୁଦିନ ପରି ମୁଁ ନିତ୍ୟକର୍ମ ସାରି ଯଥା ସମୟରେ ସ୍କୁଲ୍‌କୁ ବାହାରିଥିଲି । ଆମ ସ୍କୁଲ୍‌ରେ ସେଦିନ ବିଜ୍ଞାନମେଳା ଚାଲିଥାଏ । ବହୁ ଶିକ୍ଷକ ଓ ପିଲାମାନେ ମେଳା ଦେଖିବାକୁ ରୁଣ୍ଡ ହୋଇଥା'ନ୍ତି । ମୁଁ ବହୁତ କାର୍ଯ୍ୟବ୍ୟସ୍ତ ଥାଏ । ସ୍କୁଲ୍ ପଡ଼ିଆରେ ଠିଆ ହୋଇଥିଲାବେଳେ ହଠାତ୍ ମୋବାଇଲ୍‌ଟି ବାଜିଉଠିଲା । ମୁଁ ମୋବାଇଲ୍ ଉଠାଇ କାନରେ ଦେଲାବେଳକୁ କାହାର ଏକ କ୍ଷୀଣ କରୁଣ କଣ୍ଠସ୍ୱରରୁ ଭାସିଆସିଲା ଏକ ଦୁଃସମ୍ବାଦ । ମୁଁ ହଠାତ୍ ବିଶ୍ୱାସ କରିପାରିଲି ନାହିଁ । ଜାଣିଲି ଦୀପୁନା ଫୋନ୍ କରି କହୁଛି – "ରବ୍ଧୀଶ ଚାଲିଗଲା ।" ମୁଁ ପୁନର୍ବାର ପଚାରିଲି – "କେଉଁଠାକୁ ଗଲା ।" ସେ କହିଲା – "ହାର୍ଟ ଫେଲ୍ କରିଗଲା । ଯେଉଁଠାକୁ ଗଲେ କେହି ଫେରନ୍ତିନି, ସେହିଠାକୁ ।"

ମୋତେ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । ମୁଁ ଏଇ କଥାକୁ ସହଜରେ ବିଶ୍ୱାସ କରିପାରୁ ନ ଥାଏ । ଏଇ ସମୟରେ ଶ୍ୟାମବାବୁ ଆସି ପହଞ୍ଚି ପଚାରିଲେ – "ଭାଇ, ଏଠି କ'ଣ ଠିଆହୋଇଛ ? ମନ କ'ଣ ଦୁଃଖ ? କ'ଣ ହୋଇଛି ?" ରବ୍ଧୀଶ କଥା କହିବାରୁ ସେ ଦୁଃଖରେ ଭାଙ୍ଗିପଡ଼ିଲା । ଅନ୍ୟ ଶିକ୍ଷକମାନେ ଆସି ପାଖରେ ପହଞ୍ଚିଗଲେ । ହୃଷୀସାର୍‌ଙ୍କ ପୁଅ ଚାଲିଗଲା – ଏ କଥା ଶୁଣି ସମସ୍ତେ ମର୍ମାହତ ହେଲେ । ଅଫିସ୍‌ରେ ତତ୍‌କାଳୀନ ପ୍ରଧାନ ଶିକ୍ଷକ ସ୍ୱର୍ଗତ ଗିରିଧାରୀ ବେହେରା ଯେତେବେଳେ ଖବରଟି ଶୁଣିଲେ, ସଙ୍ଗେ ସଙ୍ଗେ କାନ୍ଦି ପକାଇଲେ । ସେ ସମୟର ଦୁଃଖ ଏବେବି ଆଖି ଆଗରେ ଭାସିଯାଉଛି ।

ଏ ହେଉଛି ସଂସାରର ବିଚିତ୍ରତା । ମଣିଷ ଯାହା ଆଶା କରି ନ ଥାଏ, ତାହା ମଧ୍ୟ ସମୟେ ସମୟେ ଘଟେ । କିଏ କହିବ ଈଶ୍ୱରଙ୍କ ଇଚ୍ଛା କ'ଣ ? ସେ ତ ମଙ୍ଗଳମୟ । ସେ କାହାରି ଅମଙ୍ଗଳ ଚାହାନ୍ତି ନାହିଁ । ସାଧାରଣ ମଣିଷ କ'ଣ ତାହା ବୁଝିପାରିବ ? ଗଛରେ ଅନେକ ଫୁଲ ଫୁଟିଥାଏ । ସମସ୍ତଙ୍କ ଭାଗ୍ୟରେ ନ ଥାଏ ଦେବତାଙ୍କ ମସ୍ତରେ ଶୋଭା ପାଇବା ।

ରଦ୍ଧୀଶ ଥିଲା ଏକ ଫୁଲ । ଫୁଲର ଯେଉଁ ଗୁଣ ଯୋଗୁଁ ସେ ସମସ୍ତଙ୍କର ଆଦରଣୀୟ, ସେ ସମସ୍ତ ଗୁଣର ଅଧିକାରୀ ଥିଲା ରଦ୍ଧୀଶ । ସେ ଯେମିତି ଦେଖିବାକୁ ସୁନ୍ଦର, ସେମିତି ସରଳ, କୋମଳ ଓ ସୌରଭରେ ଭରପୂର । ତା'ର ଜୀବନ ଥିଲା ଏକ ସଂଗ୍ରାମମୟ ଜୀବନ । ତା' ଭଳି ପିତୃମାତୃ ଭକ୍ତ ସନ୍ତାନ ଏ କଳିଯୁଗରେ କ୍ୱଚିତ୍ ଦେଖାଯାଏ । ତା'ର ଜୀବନର ଚଲାପଥରେ ଭୁଲ୍ କଲାଭଳି କୌଣସି କାର୍ଯ୍ୟ କେହି ପ୍ରାୟ ଦେଖି ନ ଥିବେ । ତା'ର ଜୀବନ ଥିଲା ଶୃଙ୍ଖଳିତ ଜୀବନ । ମୁଁ କେବେ ବଡ଼ପାଟିରେ କଥାବାର୍ତ୍ତା କରୁଥିବାର ଶୁଣିନି । ତା'ର କଥା କହିଲେ ବହୁତ ହେବ । ମୋଟ ଉପରେ ସେ ଥିଲା ପରମପିତାଙ୍କର ଆଶୀର୍ବାଦପୁଷ୍ଟ ସନ୍ତାନ ଏବଂ ସତ୍‌ସଙ୍ଗ ଜଗତର ଜଣେ ସଚ୍ଚା କର୍ମୀ । ସତ୍‌ସଙ୍ଗ ଜଗତ ତା'ଠାରୁ ବହୁତ କିଛି ଆଶା କରୁଥିଲା । ବିଭିନ୍ନ ପତ୍ରପତ୍ରିକାରେ ଠାକୁରଙ୍କ ବିଷୟରେ ଲେଖା ଓ ବିଜ୍ଞାନ ଛାତ୍ର ହିସାବରେ 'ବିଜ୍ଞାନ ଦିଗନ୍ତ' ପତ୍ରିକାରେ ଲେଖା ତାଙ୍କୁ ସମାଜରେ ଖୁବ୍ ପରିଚିତ କରିଛି । ସମସ୍ତ ଗୁଣ ଅଧିକାରୀ ହୋଇଥିଲେ ସୁଦ୍ଧା ଶେଫାଳି ଫୁଲ ପରି ଅଳ୍ପ ସମୟ ପାଇଁ ଫୁଟି ଝରିପଡ଼ିଲା ।

ଆଜି ତା'ର ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ପରମପିତାଙ୍କ ରାତୁଳ ଚରଣରେ ପ୍ରାର୍ଥନା ଜଣାଏ, ତା'ର ବିଦେହୀ ଆତ୍ମା ପରପାରିରେ ଶାନ୍ତିରେ ରହୁ ।



  

# Gone Too Soon : A Tribute to a Good Human Being

**Rashmiranjan Rajguru**
GM (Training), JIS Group of Institutes
Kolkata

"Death is something we will all experience, when our loved ones dies, and when we come to the end of our own lives. Some people live with life limiting conditions for some time; others die suddenly or with little warning."

One yearly morning at around 7.30 am, I received the shattering news that Rudhish (related to each other through our families too), a guy that I loved and admired, was no longer with us. My heart broke on the spot and through the steady stream of tears, I tried to make sense of it. But I couldn't. I couldn't make sense of it because it didn't make sense. Things like this were highly unexpected to happen.

I write this with great sadness over the unimaginable loss of one of the simplest guys I have ever come across, to massive cardiac arrest at an early age. I can't describe the sense of loss accurately. Instead, I am going to talk about Rudhis, the person. Who he was, what he meant to me, and why he was loved by everyone who was lucky enough to cross paths with him. This is my tribute to him, a small piece of the legacy he has left behind.

  

He fought a brave and silent battle for almost two years without letting anyone know about the pain he was passing through. He took each day in his stride, never really complaining, always feeling tried and hoping against hope that someday he could get on with his life. Neither me nor anyone close to him ever realized that he was passing through this traumatic phase of his life.

This superbly calm guy, inside and out, was a wonderful human being to me, impressing everyone with his gentle and no-nonsense attitude. One of his strengths in life was being very polite with people and maintained a very down-to-earth personality. Also, I always admired how he never judged or forced his opinions on anyone and he was a listener to the core. His magnetic calmness will be missed by all who knew him.

Rudhish was a loving peron, he truly and genuinely loved and cared for the people in his life. a introvert by nature, he always preferred to listen more an talk feeling happier and more content than when you started it. He had an inherent kindness and ability to impress upon the people.

A true son to his parents, a rarity in today's world, he loved to go to the Satsang of Sri Sri Thakur Anukulchandra and spent most of his times with the books. I still recall our last conversation when he visited my residence just couple of months before he passed away. By seeing him sweating in a cool evening in the month of January, I saked him, "why are you sweating too much ?" He responded calmly, "nothing like it. Just too much of work pressure." But when insisted that there is something wrong with you then he came out with the line, "I have some problems with my health. I

hope that I will be all right in the future." I said have you communicated this to the parents. The response was something unusual to what another guy of his age would have given. He said, "It's a small problem. No need to tel to Nana (father). He will be unnecessarily disturbed. At this age he needs peace. He has done enough for us. I don't want to creat trouble for him. I will be fine with the grace of Sri Sri Thakur." for a moment I was speechless. It was so heartening to see a young guy of this generation talking in that language. I can say that he was a rare breed in a highly degrading society which is striving hard to produce good children.

My biggest regret is that I couldn't have as many moments/conversations with hm as much as I would have loved to. One of the most difficult parts for me about this whole ordeal is that Rudhish was a trule remarkable and likeable guy. He had a calming effect and influence around him. He brought joy and happiness into so many people lives, yet for whatever reason, he failed to find it in his own. He made our world a better place to live in but it was not reciprocated. I keep asking myself, "How could a guy like him, a guy who embodied positivity and love... a guy who was esteemed by those around him... how could he not see what we see ? How could he not love himself as we did ?" I realize that there is no use in asking myself questions like that, because there are no answers. My time with him was too short even though we belonged to the same village (Lathanga, Jagatsinghpur) but it was meaningful; he showed me love, kindness, compassion and insight to life. He reminded me that gentleman exists in this world.

Those of us who were close to him will never forget his smile face and gentle nature. During his short time at his job place (OUAT) he had already made a myriad of friends, which is testament to the kind of individual that he was.

I am truly heartbroken that I will never speak to him again and I will never see him again. I have lost one of the best guys that I ever had. I loved him and I miss him so much.

May his departed soul rest in peace.



  

# ଜାଜ୍ୱଲ୍ୟମାନ ଦୀପଶିଖା

**ଡଃ ତ୍ରିନାଥ ମହାରଣା, ସ.ପ୍ର.ଗ.**
ଅବସରପ୍ରାପ୍ତ ପ୍ରଫେସର
ଓ.ୟୁ.ଏ.ଟି., ଭୁବନେଶ୍ୱର
ଶତାବ୍ଦୀନଗର, ଭୁବନେଶ୍ୱର

ପ୍ରତି ମୁହୂର୍ତ୍ତରେ ଅଗଣିତ ଲୋକ ଜନ୍ମ ହୁଅନ୍ତି ଆଉ ଅଗଣିତ ଲୋକ ମୃତ୍ୟୁବରଣ କରନ୍ତି । ଏହି ଜନ୍ମମରଣର ଚକ୍ରର କାରଣ ଅନେକଙ୍କୁ ଅଗୋଚର । ଏହାକୁ ଭେଦ କରିବାପାଇଁ କେଉଁ ଆବହବାନ କାଳରୁ ଅନେକ ତଥ୍ୟ ଉଦ୍‌ଘାଟନ କରାଯାଇଛି । ତଥାପି ମଣିଷ ଏ ସମ୍ବନ୍ଧରେ ପ୍ରଶ୍ନଶୂନ୍ୟ ହୋଇ ନାହିଁ । ଇଷ୍ଟଗୁରୁ ପୁରୁଷୋତ୍ତମଙ୍କ ଶରଣ ନ ନେଲେ ଏ ସମ୍ବନ୍ଧରେ କେହି ବି ପ୍ରଶ୍ନଶୂନ୍ୟ ହୋଇପାରିବ ନାହିଁ । ଆମର ଜୀବନକାଳରେ ଯେଉଁମାନେ ଜନ୍ମହୋଇଛନ୍ତି ଏବଂ ମୃତ୍ୟୁବରଣ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଆମେ ଭୁଲିପାରୁନା । ସେମାନେ ଆମ ମନ ଜଗତରେ ଉଜ୍ଜ୍ୱଳ ତାରକା ରୂପେ ରହିଯାଇଥା'ନ୍ତି । ମୃତ୍ୟୁବରଣ କରିଥିବା ଲୋକଟିକୁ ଆମେ ସହଜରେ ମନେପକାଇପାରୁ । ଏକଥାରୁ ସ୍ପଷ୍ଟ ହେଲା, ସେହି ଲୋକଟି ସହିତ ଆମେ କିଛିମାତ୍ରାରେ ଅନ୍ତରଙ୍ଗ ହୋଇଉଠିଛେ । ଏହା କାରଣ ଜଗତର ଏକ ପ୍ରକ୍ରିୟା କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁରୁଷୋତ୍ତମଙ୍କୁ ଗୁରୁ ରୂପରେ ଗ୍ରହଣ କଲାପରେ ମନୁଷ୍ୟର ସାଂସାରିକ ପରିବେଶକୁ ଛାଡ଼ି ଆଉ ଏକ ଇଷ୍ଟ ପରିବେଶ ସୃଷ୍ଟି ହୋଇଥାଏ । ବହୁ ଇଷ୍ଟଭ୍ରାତାଙ୍କର ଦେଖାସାକ୍ଷାତ ହୁଏ ଏବଂ ଧୀରେ ଧୀରେ ବାନ୍ଧବତାରେ ପରିଣତ ହୁଏ । ଦୀକ୍ଷା ସମୟରେ ନିଜର ଇଷ୍ଟାନୁରାଗଦ୍ୱାରା ପାରିପାର୍ଶ୍ୱିକରେ ଇଷ୍ଟଙ୍କୁ ପ୍ରତିଷ୍ଠା କରିବା ଏବଂ ସେମାନଙ୍କ ଆପଦବିପଦରେ ଅର୍ଥ ବାକ୍ ଓ ବାସ୍ତବକର୍ମରେ ସାହାଯ୍ୟ କରି ସେମାନଙ୍କୁ ଆପଦମୁକ୍ତିପାଇଁ ବଦ୍ଧପରିକର ହେବା କଥା କୁହାଯାଇଛି । ମନୁଷ୍ୟ କ୍ରମଶଃ

ଏହି ପ୍ରକ୍ରିୟାରେ ଇଷ୍ଟରଜ୍ଜୁରେ ବନ୍ଧା ହୋଇ ଇଷ୍ଟ ପରିବାରର ସଦସ୍ୟ ହୋଇପଡ଼େ ଏବଂ ନିଜର ବନ୍ଧୁବାନ୍ଧବ ପରିବେଶକୁ ପ୍ରସାରିତ କରି ଏକ ବିରାଟ ପରିବେଶକୁ ଅଗ୍ରସର ହୁଏ । ଏହା ବିବର୍ତ୍ତନର ଏକ ପ୍ରକ୍ରିୟା । ଇଷ୍ଟଗ୍ରହଣଦ୍ୱାରା ଏହା ସମ୍ଭବ ହୁଏ । ତେଣୁ ଇଷ୍ଟଭ୍ରାତାମାନଙ୍କ ସହିତ କୃଷ୍ଟିବାନ୍ଧବତା ଜୀବନରେ ବିବର୍ତ୍ତନପାଇଁ ଅପରିହାର୍ଯ୍ୟ । ଆଉ ଅଧିଗମ୍ୟ ଯଦି କିଛି ଅଛି, ତା' ହେଉଛି ସ୍ମୃତିବାହୀ ଚେତନା, ଯା' ଜୀବନ ଓ ମରଣକୁ ଭେଦକରି ପରବର୍ତ୍ତୀରେ ପହଞ୍ଚାଇ ଦିଏ । କାରଣ ଏହାର ଭିତର ଦେଇ ଏହି ଦେହରେ ଅମରଣ ବା ଅମୃତତ୍ୱ ଯେକି ତାହା ଅନୁଭବ କରିପାରୁ । ଅନୁଜ ପ୍ରତିମ ଗୁରୁଭ୍ରାତା ପରଲୋକଗତ ରଦ୍ଧୀଶ ଆଚାର୍ଯ୍ୟ ମୋର ଜଣେ ଅନ୍ତରଙ୍ଗ ଗୁରୁଭ୍ରାତା ଥିଲେ । ତାଙ୍କ ସହିତ ମୋର ପରିଚୟ ତିନି ଚାରି ବର୍ଷର । ପ୍ରଥମ ସାକ୍ଷାତ୍‌ରୁ ତାଙ୍କ ସହିତ ମୋର ଏକ ଘନିଷ୍ଠତା ଆରମ୍ଭ ହୋଇଥିଲା । ତାହାର କାରଣ, ସେ ଜଣେ ସ୍ନାତକୋତ୍ତର ଡିଗ୍ରୀ ଥିବା ଶିକ୍ଷିତ ମନୁଷ୍ୟ ତଥା ସେ ଡକ୍ଟରେଟ୍ କରିବାରେ ପ୍ରୟାସୀ । ଯେଉଁମାନେ ଡକ୍ଟରେଟ୍ ପ୍ରୟାସୀ, ସେମାନଙ୍କ ପ୍ରତି ମୋର ସଦିଚ୍ଛା ଥାଏ ଏବଂ ତାଙ୍କ ଗବେଷଣା ବିଷୟରେ ମୋତେ ଆଲୋଚନା କରିବାକୁ ଭଲ ଲାଗେ । ପରବର୍ତ୍ତୀକାଳରେ ମୁଁ ଜାଣିବାକୁ ପାଇଲି, ସେ ଜଣେ ସ୍ୱନାମଧନ୍ୟ ଇଷ୍ଟଭ୍ରାତା ସହପ୍ରତିଋତ୍ୱିକ ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟଙ୍କର ଏକମାତ୍ର ପୁତ୍ର । ଶ୍ରୀଶ୍ରୀଠାକୁର ମନୁଷ୍ୟର ମଙ୍ଗଳପାଇଁ ବିଜ୍ଞାନର ଚାବିକାଠି ଖୋଲିବାପାଇଁ ବିଶେଷ ଆଗ୍ରହୀ । ତେଣୁ ଇଷ୍ଟପ୍ରାଣ ଉଚ୍ଚଶିକ୍ଷିତ ବୈଜ୍ଞାନିକମାନେ ତାଙ୍କ ନିକଟକୁ ଗଲେ, ସେ ଖୁବ୍ ଆନନ୍ଦ ଅନୁଭବ କରୁଥିଲେ । ରଦ୍ଧୀଶଙ୍କ ସହିତ ଆଲୋଚନାରୁ ଜାଣିଲି, ସେ ଯେଉଁ ବିଷୟରେ ଗବେଷଣା କରୁଛନ୍ତି, ତାହା ଏକ ଉଚ୍ଚକୋଟୀର ବିଷୟ । ଖାଦ୍ୟ ଉତ୍ପାଦନପାଇଁ ମାଟିରେ ବାରମ୍ବାର ରାସାୟନିକ ସାର ପ୍ରୟୋଗ କଲେ, ମାଟିରେ ଥିବା ଅଣୁଜୀବମାନଙ୍କର କି ପରିବର୍ତ୍ତନ ଘଟୁଛି, ଏହି ବିଷୟରେ ସେ ଗବେଷଣା କରୁଥିଲେ ।

ମାଟିର ପ୍ରସ୍ତୁତି ଏବଂ ଅବସ୍ଥିତି ଖାଦ୍ୟଶସ୍ୟ ଉତ୍ପାଦନର ମୂଳଭୂମୀ । ପାଗର ପ୍ରଭାବରେ ବହୁ ରାସାୟନିକ ଓ ଭୌତିକ ପ୍ରଭାବରେ ମାଟି ତିଆରି ହୁଏ





ଏବଂ ତା' ଭିତରେ ଲକ୍ଷ ଲକ୍ଷ ଅଣୁଜୀବ ବାସ କରନ୍ତି । ଯେଉଁମାନେ ବିଭିନ୍ନ ପ୍ରକ୍ରିୟାରେ ଜମିର ଉତ୍ପାଦିକା ଶକ୍ତି ବଢ଼ାଇଥା'ନ୍ତି । ଗବେଷଣାରୁ ଜଣାଯାଇଛି, ୧ ଗ୍ରାମ୍ ମାଟିରେ ୧୦$^{୬}$ ପରିମାଣର ଅଣୁଜୀବକୋଷ ଦେଖାଯା'ନ୍ତି ଏବଂ ଏଗୁଡ଼ିକ ୬୦୦ଟି ପ୍ରଜାତିର । ବର୍ତ୍ତମାନ ପୃଥିବୀର ଅନେକ ପ୍ରମୁଖ ଗବେଷଣା କେନ୍ଦ୍ରରେ ଏହି ବିଷୟରେ ଗବେଷଣା କରାଯାଉଛି । ସାର ପ୍ରୟୋଗ ଫଳରେ ଏହି ଅଣୁଜୀବମାନଙ୍କର କି ପରିବର୍ତ୍ତନ ଘଟୁଛି, ତାହା ଜାଣିବା ନିହାତି ଜରୁରୀ । ଏହି ପ୍ରକାର ଗବେଷଣା ଉପଲବ୍ଧ ତଥ୍ୟ ମନୁଷ୍ୟକୁ ଅନେକ ଉତ୍ପାଦନ ସମ୍ପର୍କୀୟ ସମସ୍ୟାରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଭବିଷ୍ୟତରେ ମୃତ୍ତିକା ବିଜ୍ଞାନର କେତେକ ମୌଳିକ ସମସ୍ୟାର ସମାଧାନ କରିବ । ଜୈବିମଣ୍ଡଳରେ ଅଣୁଜୀବମାନେ ଏକ ପ୍ରମୁଖ ଅଂଶ ହେଲେ ବି ସେମାନଙ୍କ ସମ୍ବନ୍ଧରେ ଆମେ ପର୍ଯ୍ୟାପ୍ତ ଗବେଷଣା କରି ନାହୁଁ । ଏହା ସତ୍ୟ ଯେ, ଏହି ଅଣୁଜୀବମାନେ ଯେଉଁ ପ୍ରମୁଖ ମଙ୍ଗଳଯୁକ୍ତ କାର୍ଯ୍ୟ କରନ୍ତି, ସେଗୁଡ଼ିକ ହେଲା - ଖାଦ୍ୟସାରର ପ୍ରକ୍ରିୟାକରଣ ଏବଂ ପରିବେଶକୁ ବିଷମୁକ୍ତ କରିବା । ତେଣୁ ଅଣୁଜୀବମାନଙ୍କୁ ଠିକ୍ ଭାବରେ ଜାଣିବା, ସେମାନଙ୍କୁ ସଂରକ୍ଷଣ କରିବା ଏବଂ ମଙ୍ଗଳ କାର୍ଯ୍ୟରେ ଲଗାଇବା ଫଳରେ ଜୈବିମଣ୍ଡଳର ସୁରକ୍ଷା ହୋଇପାରିବ । ସେମାନେ ଆମ ଆଖିକୁ ଦେଖାଯାଉ ନ ଥିଲେ ବି ଆମ ଜୈବିମଣ୍ଡଳର ଏକ ପ୍ରମୁଖ ଅଂଶ । ସବୁଠାରୁ ବଡ଼ ବିସ୍ମୟକର କଥା ହେଲା, ଏମାନଙ୍କର ବିରାଟ ଅଦୃଶ୍ୟ ଉପସ୍ଥିତି, ତୀବ୍ରଗତିରେ ବୃଦ୍ଧି କ୍ଷମତା ଏବଂ ଆନୁବଂଶିକ ଭିନ୍ନତା ଯାହା ନିଶ୍ଚିତ ଭାବରେ ଜୈବିମଣ୍ଡଳର ସ୍ଥିରତାପାଇଁ ଅପରିହାର୍ଯ୍ୟ । ବର୍ତ୍ତମାନ ପୃଥିବୀର କେବଳ ଶତକଡ଼ା ୧୨ ଭାଗ ଅଞ୍ଚଳରେ ଚାଷ କରାଯାଉଛି । ଏହି ଅଞ୍ଚଳରୁ ଧୀରେ ଧୀରେ ଜୈବ କାର୍ବନ ନଷ୍ଟ ହେଉଛି । ଗତ ୧୦,୦୦୦ ବର୍ଷ ଭିତରେ ପ୍ରାୟ ଶତକଡ଼ା ୧୫.୮ ଭାଗ ଜୈବକାର୍ବନ୍ ନଷ୍ଟ ହୋଇସାରିଲାରି । ଏହା ଯଦି ଦ୍ରୁତଗତିରେ ହ୍ରାସ ପାଏ, ତେବେ ଉତ୍ପାଦନ ହ୍ରାସ ଅବଶ୍ୟମ୍ଭାବୀ । ତେଣୁ ମାଟିରେ ସାର ପ୍ରୟୋଗ କଲେ, କୀଟନାଶକ ଦ୍ରବ୍ୟ ପ୍ରୟୋଗ କଲେ ଅଣୁଜୀବମାନଙ୍କର ଜୀବନଶୈଳୀ ପ୍ରଭାବିତ ହୋଇ ମାଟିର ଜୈବ କାର୍ବନ ଯଦି ନଷ୍ଟହୁଏ, ତେବେ ଏକ ଭୟଙ୍କର

ପରିସ୍ଥିତି ସୃଷ୍ଟିହେବ । ରଦ୍ଧୀଶ ଏହି ବିଷୟରେ ଗବେଷଣା କରୁଥିଲେ । ରଦ୍ଧୀଶଙ୍କ ତିରୋଧାନ ପରେ ତାଙ୍କର ଗବେଷଣାତ୍ମକ କାର୍ଯ୍ୟକ୍ରମ ଅଧା ରହିଗଲା । ରଦ୍ଧୀଶଙ୍କ ଆତ୍ମା ଅମର ଏବଂ ଚିରନ୍ତନ ଗତିଶୀଳ । କିଏ ଜାଣେ, ଆସନ୍ତା ଜନ୍ମରେ ସେ ଏହି ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବେ ।

ସ୍ୱର୍ଗତ ରଦ୍ଧୀଶଙ୍କ ଅନ୍ୟ ଏକ ଦିଗ ବିଷୟରେ ମୁଁ କହିବାକୁ ଚାହେଁ, ସେ ଜଣେ ନିଷ୍ପାପର ଇଷ୍ଟପରାୟଣ ଯୁବକ ଥିଲେ । ପୂଜ୍ୟପାଦ ଶ୍ରୀଶ୍ରୀଦାଦାଙ୍କର ନିର୍ଦ୍ଦେଶରେ ମୁଁ ଯେଉଁ କାମରେ ତାଙ୍କ ସାହାଯ୍ୟ ଚାହୁଁଥିଲି, ସେ ନିର୍ଦ୍ଦିଷ୍ଟ ସମୟରେ ତାହା ପୂରଣ କରିଥା'ନ୍ତି । ତାଙ୍କ ଯୋଗୁଁ ମୋର କେତେକ କାର୍ଯ୍ୟ ସୁରୁଖୁରୁରେ ସମାପନ ହୋଇପାରିଛି । ତାଙ୍କର ସୌମ୍ୟ ଚେହେରା ବର୍ତ୍ତମାନ ବି ମୋ ଆଖି ଆଗରେ ଭାସିଆସେ । କିଏ ଜାଣେ, ପରମେଶ୍ୱରଙ୍କର କି ବିଚାର । ତେବେ ଆଜି ଏହି ବର୍ଷପୂରଣୀର ଅବସରରେ ଆମେ ସମସ୍ତେ ଆଶା କରିବା, ତାଙ୍କର ଚିରନ୍ତନୀ ଜୀବନଦୀପ ଚିରଦିନ ଜାଜ୍ୱଲ୍ୟମାନ ହୋଇ ତାଙ୍କ ଚତୁଃପାର୍ଶ୍ୱକୁ ଆଲୋକିତ କରୁଥାଉ ।



  

# ସ୍ମୃତି ଅମଳିନ

**ଅଭୟ କୁମାର ପରିଡ଼ା, ସ.ପ୍ର.ର.**
ସତ୍‌ସଙ୍ଗ ବିହାର, ଭୁବନେଶ୍ୱର

ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ (ସ.ପ୍ର.ର.)ଙ୍କ ସହିତ ମୋର ସମ୍ପର୍କ ଦୀର୍ଘଦିନର - ମୋର କୈଶୋର ଅବସ୍ଥାରୁ । ତାଙ୍କ ପରିବାରକୁ ମୁଁ ବହୁବାର ଯାଇଛି । ପ୍ରଥମ ପ୍ରଥମ ଯେତେବେଳେ ଯାଉଥିଲି, ତାଙ୍କର ଚାଳଘର ଥିଲା, ପିଲାମାନେ ସବୁ ଛୋଟ ହୋଇଥିଲେ । ସେଇ ଛୋଟ ଅବସ୍ଥାରେ ହୃଷୀଭାଇଙ୍କ ପୁଅ ରଶ୍ମୀଶକୁ ଦେଖିଛି । ଏତେ ଆଗକୁ ଆସେନି କି ଉପରେ ପଡ଼ି କଥା କହେନି । ତା'ର ବାପା ଯେଉଁ ନିର୍ଦ୍ଦେଶ ଦିଅନ୍ତି, ସେଇଟିକୁ ତତ୍‌କ୍ଷଣାତ୍ କରିଦିଏ । ଛୋଟପିଲା - ଏଣୁ ଏତେ ଗୁରୁତ୍ୱ ଦେଇ ନ ଥିଲି । ପାଠ ପଢ଼େ, ବଡ଼ ହୁଏ ଏବଂ ବଡ଼ମାନଙ୍କ ସହିତ ହିଁ ତା'ର ଯୋଗାଯୋଗ । କୈଶୋର ଅବସ୍ଥାରୁ 'ସତ୍‌ସଙ୍ଗ' ସହ ତା'ର ଘନିଷ୍ଠତା । ମୋ ସହିତ, ପୂଜ୍ୟ ବିନାୟକଦାଙ୍କ ସହିତ ଏବଂ ଅନ୍ୟାନ୍ୟ କର୍ମୀବୃନ୍ଦଙ୍କ ସହିତ ପ୍ରାୟ ଯୋଗାଯୋଗ ରଖେ । ଥରେ ହୃଷୀଭାଇ ଫୋନ୍ କଲେ - ମୋ ପୁଅ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ଯିବ ଗୋଟାଏ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବାପାଇଁ - ତା'ର ରହିବା ଓ ଖାଇବା ବ୍ୟବସ୍ଥା ଇତ୍ୟାଦି ସେଠାକାର ଚିହ୍ନା ଗୁରୁଭାଇଙ୍କୁ କହି କରାଇବାପାଇଁ । ତାହା ମୁଁ କରାଇ ଦେଇଥିଲି । ଭୁବନେଶ୍ୱରରେ ରହିବା ପରେ ବିଶେଷତଃ ଓ.ୟୁ.ଏ.ଟି.ରେ ଚାକିରି କଲା ପରେ ବାରମ୍ବାର ସତ୍‌ସଙ୍ଗ ବିହାରରେ ଓ ବିଭିନ୍ନ ସତ୍‌ସଙ୍ଗରେ ପ୍ରାୟ ଦେଖାହୁଏ । ତା'ର ଭଉଣୀ-ଭିଣୋଇଙ୍କ ସରକାରୀ ବାସଭବନ ସତ୍‌ସଙ୍ଗକୁ ଅନେକବାର ଯାଇଛି ଏବଂ ତା'ର ପ୍ରମୁଖ ଭୂମିକା ଲକ୍ଷ୍ୟ କରିଛି । ସେ ଥିଲା ଉଚ୍ଚଶିକ୍ଷିତ, ବିଦ୍ୟାନୁରାଗୀ, ଇଷ୍ଟପ୍ରାଣ, ପିତୃମାତୃଭକ୍ତ ଇତ୍ୟାଦି ବହୁ ସଦ୍‌ଗୁଣର ଅଧିକାରୀ । ବିଭିନ୍ନ ସମୟରେ ସେ ଦେଓଘର ଯାଏ ଏବଂ ସେଠାରେ ମଧ୍ୟ ଦେଖାହୁଏ । ବିଶେଷତଃ ଏଇ କିଛି ବର୍ଷ ଧରି ସେ ପରମପୂଜ୍ୟପାଦ ଶ୍ରୀଶ୍ରୀଦାଦାଙ୍କ ଜନ୍ମତିଥିକୁ ଦେଓଘର ଯାଉଥିଲା ।

  

ତା'ଠାରୁ ନେଗେଟିଭ୍ କଥା ପ୍ରାୟ କେହି ଶୁଣି ନ ଥିବେ । ସେ 'ପାଞ୍ଜା' ପାଇବା ପରେ ଆମେ ଖୁସିଥିଲୁ ଯେ, ପରବର୍ତ୍ତୀ ସମୟରେ ଶ୍ରୀଶ୍ରୀଠାକୁରଙ୍କ କାମ କରିବାପାଇଁ ଭଲ ଭଲ ପିଲାମାନେ ସବୁ ବାହାରିଲେଣି । ଠାକୁର ବୋଧେ ସେଇ ଭଲକୁ ନେଇଯିବାକୁ ଚାହିଁଲେ ଆଉ କେଉଁ ଅତି ଭଲ ରାଜ୍ୟକୁ ।

ରଶ୍ମୀଶର ବିବାହ ଭୋଜି ଦିନ ବି ମୁଁ ଯାଇଥିଲି ହୃଷୀଭାଇଙ୍କ ଘରକୁ । ଦେଖିଲି, ସେଠାରେ ଆନନ୍ଦର ହାଟ । ମାତ୍ର ଅଳ୍ପ କେତୋଟି ମାସ ପରେ ଦାରୁଣ ସମ୍ବାଦ ଆମ ସମସ୍ତଙ୍କୁ ହତମ୍ଭବ କରିଦେଲା । ସେଦିନ ପହିଲା ଭାଦ୍ରବ, ଅଗଷ୍ଟ ୧୮ ତାରିଖ ୨୦୧୪ । ଆମେ ଯାଉଛୁ ଏରସମାର ଏକ ସତ୍ସଙ୍ଗରେ ଯୋଗଦେବାକୁ । ଖବର ପାଇଲୁ ରଶ୍ମୀଶ ଚାଲିଗଲା, ଯେଉଁଠିକୁ ଗଲେ ଆଉ କେହି ଫେରନ୍ତିନି । ବିଶ୍ୱାସ କରିହେଲାନି - ଖବର ପରେ ଖବର ନେଲୁ । ହୃଷୀଭାଇଙ୍କଠାରୁ ଫୋନ୍‌ରେ ଜାଣିଲୁ – ଖବରଟି ସତ୍ୟ । ସେତେବେଳେ ହୃଷୀଭାଇ କ୍ୟାପିଟାଲ୍ ହସ୍‌ପିଟାଲ୍‌ରେ । ପଚାରିଲି – ତା'ର ଶବକୁ ପୁରୀ ନେବେ ନା ଗାଆଁକୁ ଆଣିବେ । ସେ ଫୋନ୍‌ରେ କହିଲେ – ପୁରୀ କାହିଁକି ନେବି ? ସେ ଗାଆଁକୁ କେତେ ଭଲ ପାଉଥିଲା – ଗାଆଁକୁ ହିଁ ନେବି । ଆମେ ଖବର ନେଉଥାଉ ଏବଂ ସେମାନେ ଗାଆଁରେ ପହଞ୍ଚିବାର ବହୁ ପୂର୍ବରୁ ଆମେ ଯାଇ ଲଥାଙ୍ଗରେ ପହଞ୍ଚିଗଲୁ । ଶବ ପହଞ୍ଚିବା ପରେ ଶତାଧିକ ଲୋକଙ୍କ ଭିଡ଼ ଓ ଯେଉଁ ଶୋକାକୁଳ ପରିବେଶ ସୃଷ୍ଟି ହେଲା, ଆମେ ଧୈର୍ଯ୍ୟଧରି ବେଶି ସମୟ ରହିପାରିଲୁନି । କ'ଣ ବା ସାନ୍ତ୍ୱନା ଦେବୁ ?

ସମୟ କାହାକୁ ଅପେକ୍ଷା କରେନି । ଦିନ ଗଡ଼ିଚାଲେ । ତା' ପରେ ଯେତେଥର, ପ୍ରାୟ ବହୁ ବହୁବାର ହୃଷୀଭାଇଙ୍କ ସହିତ ମିଶୁଛି । ଅସୀମ ଧୈର୍ଯ୍ୟ ଧରି ଇଷ୍ଟକର୍ମ କରିଚାଲିଛନ୍ତି ପୂର୍ବବତ୍ । କିନ୍ତୁ ପୁତ୍ରର ଗୁଣ ଗୁଣି ହେଉଛନ୍ତି ଏବଂ ଜଣେ ଉପଯୁକ୍ତ ଉତ୍ତରଦାୟାଦ ହରାଇବାର ଦୁଃଖ ତାଙ୍କ ବୁକୁରେ ଜମାଟ ବାନ୍ଧିରହିଛି । ପରମପିତା ଶ୍ରୀଶ୍ରୀଠାକୁରଙ୍କ ଶ୍ରୀପାଦପଦ୍ମରେ ପ୍ରାର୍ଥନା – ଏଇ ଅସହନୀୟ ଦୁଃଖ ଓ କଷ୍ଟକୁ ସହ୍ୟ କରିବାପାଇଁ ହୃଷୀଭାଇ ଓ ତାଙ୍କ ପରିବାରକୁ ଠାକୁର ଅସୀମ ଧୈର୍ଯ୍ୟ ପ୍ରଦାନ କରନ୍ତୁ । ବନ୍ଦେ ପୁରୁଷୋତ୍ତମମ୍ ।।



  

# ଯାହାକୁ ଭୁଲିହେବ ନାହିଁ

ଡଃ. ଶରତ ଚନ୍ଦ୍ର ସ୍ୱାଇଁ, ସ.ପ୍ର.ର.
ସତ୍‌ସଙ୍ଗ ବିହାର, ଜଗତ୍‌ସିଂହପୁର

ଏହି ଦୁନିଆରେ ଅନେକ ଘଟଣା, ଅନେକ କଥା ଆଉ କିଛି କିଛି ରୂପର ସୌନ୍ଦର୍ଯ୍ୟର ଛାପ ଅଛି, ଯାହା ସହଜରେ ଭୁଲିହୁଏ ନାହିଁ । ସେହିପରି ଗୋଟିଏ ଶାନ୍ତ-ଶିଷ୍ଟ, କାନ୍ତ-କମନୀୟ, ସରଳ-ଅମାୟିକ, ନମ୍ର-ଭଦ୍ର, ପୁଅ ରଦ୍ଧୀଶ – ହୃଷୀଭାଇଙ୍କ ପୁଅ, ମୋର ପୁତ୍ରପ୍ରତିମ । ଆଗରୁ ହୁଏତ ଅନେକ ଥର ତାକୁ ଦେଖିଛି; କିନ୍ତୁ ସେ ଆମ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ ଜଗତ୍‌ସିଂହପୁର ସତ୍‌ସଙ୍ଗ ବିହାରର ଉତ୍ସବମାନଙ୍କରେ । ବିଶେଷତଃ ମୁଁ ଲକ୍ଷ୍ୟକଲି, ଶ୍ରୀଶ୍ରୀବଡ଼ଦା'ଙ୍କ ଜନ୍ମ-ଶତବାର୍ଷିକୀ ଉତ୍ସବରେ । ଅତିଥି ଓ କର୍ମୀମାନଙ୍କୁ ବ୍ୟାଚ୍ ପ୍ରଦାନ କରିବା ଏବଂ ଅତିଥି-ଆନନ୍ଦ ବଜାରରେ ପରିବେଷଣ ଇତ୍ୟାଦି କରିବା । ଉଚ୍ଚଶିକ୍ଷିତ ହେଲେହେଁ ଏସବୁ କାର୍ଯ୍ୟ କରିବାରେ ଦ୍ୱିଧା ବା ସଙ୍କୋଚ ନ ଥାଏ । ୨୦୧୪ ମସିହା ଏପ୍ରିଲ୍ ୪ ତାରିଖରେ ଜଗତ୍‌ସିଂହପୁର ସତ୍‌ସଙ୍ଗ ବିହାରରେ ଶ୍ରୀବିଗ୍ରହ ପ୍ରତିଷ୍ଠା ହେଲେ ପୂଜନୀୟ ବିଙ୍କିଦା'ଙ୍କ କରକମଳରେ । ଅତି ପ୍ରତ୍ୟୁଷରୁ ମୁଁ ଲକ୍ଷ୍ୟକଲି, ଧୋତି-ପଞ୍ଜାବୀ ପିନ୍ଧି ସେ ଆସି ପହଞ୍ଚି ସ୍ୱେଚ୍ଛାସେବୀ କାର୍ଯ୍ୟ ତୁଲାଇବାରେ ବ୍ୟସ୍ତ ।

ଏହି ଧୋତି-ପଞ୍ଜାବୀ ପିନ୍ଧିବା ରୂପ ତା'ର ମନେପଡ଼ିବାବେଳେ ମୋର ଗୋଟିଏ ଘଟଣା ମାନସପଟକୁ ବାରମ୍ବାର ଆନ୍ଦୋଳିତ କରୁଛି । ୨୦୧୩ ମସିହା ଏପ୍ରିଲ୍ ଉତ୍ସବରେ ଆମେ ସମସ୍ତେ ଦେଓଘର ସତ୍‌ସଙ୍ଗ ଆଶ୍ରମ ଯାଇଥାଉ । ଦାଁ-ହାଉସ୍‌ରେ ପାଖାପାଖି ରହୁଥାଉ – ମୁଁ, ହୃଷୀଭାଇ, ରତ୍ନାକରଭାଇ, ବଂଶୀଧର ପଣ୍ଡା ଭାଇନା ପ୍ରଭୃତି କେତେଜଣ । ରଦ୍ଧୀଶ ମଧ୍ୟ ଆମ ପାଖ ବେଡ୍‌ରେ ରହୁଥାଏ । ଏପ୍ରିଲ୍ ୧୫ ଭୋର୍‌ରୁ ତା'ର ପବିତ୍ର 'ପାଞ୍ଜା' ମିଳିବା ବିଷୟ ୧୪

ତାରିଖ ସନ୍ଧ୍ୟାରେ ଜାଣିଲୁ । ହୃଷୀଭାଇ ତାକୁ ପଚାରିଲେ – ନୂଆ ପଞ୍ଜାବୀ ଓ ଟ୍ରାଉଜର କିଣିଦେବେ ବୋଲି । କିନ୍ତୁ ସେ ଟ୍ରାଉଜର ପରିବର୍ତ୍ତେ ଧୋତି ପିନ୍ଧିବାକୁ ପସନ୍ଦ କରେ । ୧୫ ଭୋରୁ ନିତ୍ୟକର୍ମ ସାରି ନୂଆ ଧୋତି-ପଞ୍ଜାବୀ ପିନ୍ଧେ । ଧୋତିକୁ ଠିକ୍ ଭାବେ ପିନ୍ଧାଇଦେବାପାଇଁ ମୁଁ ତାକୁ ପାଖକୁ ଡାକେ ଏବଂ ସେ ମୋ ପାଖରେ ଧୀରସ୍ଥିର ହୋଇ ଠିଆହୁଏ । ମୁଁ ଧୋତିଟି ତାକୁ ପିନ୍ଧାଇ ଦିଏ । ତପ୍ରେ ସେ ଆମ ସମସ୍ତଙ୍କୁ ଜୟଗୁରୁ ଜଣାଇ ବାହାରିପଡ଼େ । ଆଜି ବି ତାକୁ ଧୋତି ପିନ୍ଧାଇ ଦେବାର ଦୃଶ୍ୟ ମୋ ସ୍ମୃତିର ମଣିକୋଠରିରେ ସୁରକ୍ଷିତ ।

ହଠାତ୍ ଆମ ମୁଣ୍ଡରେ ଚଡ଼କ ପଡ଼ିବା ପରି ବୋଧ ହେଲା – ୨୦୧୪ ଅଗଷ୍ଟ ୧୮ରେ ଯେତେବେଳେ ଆମେ ଶୁଣିଲୁ sudden cardiac arrestରେ ସେ ପରପାରିକୁ ଚାଲିଗଲା । ସବୁ ସ୍ତବ୍ଧ-ନିସ୍ତବ୍ଧ । କ'ଣ ହଠାତ୍ ଏମିତି ଘଟିଗଲା ? ଏମିତି କ'ଣ ହୁଏ ନା ଏମିତି କ'ଣ ମୃତ୍ୟୁ ଆସେ !! ଗାଡ଼ି ରିଜର୍ଭ କରି ଜଗତ୍‌ସିଂହପୁରର ସତ୍‌ସଙ୍ଗ କର୍ମୀବୃନ୍ଦ ଚାଲିଲୁ ହୃଷୀଭାଇଙ୍କ ଗାଆଁ ଲଥାଙ୍ଗକୁ । ପହଞ୍ଚିବାବେଳକୁ ସନ୍ଧ୍ୟା ଆଗତପ୍ରାୟ । ଶ୍ମଶାନରେ ରବୀଶର ଚିତା ପ୍ରସ୍ତୁତ । ସେଇ କୋମଳ, ନିଷ୍ପାପ, ଇଷ୍ଟପ୍ରାଣ, ଅଜାତଶତ୍ରୁ, ଉଚ୍ଚଶିକ୍ଷିତ, ବହୁ ଆଶା ଓ ସ୍ୱପ୍ନର ଭଣ୍ଡାର ରବୀଶର ପଞ୍ଚଭୂତର ଶରୀର କିଛି ସମୟ ଭିତରେ ପଞ୍ଚଭୂତରେ ଲୀନ ହୋଇଗଲା । କାହିଁ କେତେଦୂରରୁ କେତେ କେତେ ଲୋକ ଆସିଥାଆନ୍ତି । ସମସ୍ତଙ୍କ ଆଖିରେ ଲୁହର ବନ୍ୟା । ଆଖିରୁ ଲୁହ ପୋଛି, ପ୍ରତ୍ୟାବର୍ତ୍ତନ କଲୁ । କିନ୍ତୁ ମନ ଭିତରେ ଲୁହବନ୍ୟା ସବୁଦିନପାଇଁ ରହିଗଲା ।



  

# ଅଭୁଲା ସ୍ମୃତି

**ଡଃ. ଆଶିଷ କୁମାର ଦାଶ**
ପ୍ରଫେସର, ମୃତ୍ତିକା ବିଜ୍ଞାନ ଓ କୃଷି ରସାୟନ ବିଭାଗ
କୃଷି ମହାବିଦ୍ୟାଳୟ, ଓ.ୟୁ.ଏ.ଟି., ଭୁବନେଶ୍ୱର

ଜୀବନର ଅଙ୍କାବଙ୍କା ରାସ୍ତାରେ ଅଣନିଃଶ୍ୱାସୀ ହୋଇ ଆଗେଇ ଯିବା ସମୟରେ ଏକ ଦୁର୍ବଳ ମୁହୂର୍ତ୍ତରେ ରଦ୍ଧୀଶ ସହିତ ମୋର ପରିଚୟ ହୁଏ ମୃତ୍ତିକା ବିଜ୍ଞାନ ଓ କୃଷି ରସାୟନ ବିଭାଗରେ । ସେ ସମୟରେ ରଦ୍ଧୀଶ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରରେ ପିଏଚ୍.ଡି. ପାଠ୍ୟକ୍ରମରେ ଯୋଗଦେବାପାଇଁ ଦରଖାସ୍ତ କରିଥାଏ । ନିଜର ପିଏଚ୍.ଡି. ପାଠ୍ୟକ୍ରମରେ ଗାଇଡ୍ ରୂପେ ସେ ଗ୍ରହଣ କରିଥାଏ ହୃଷୀକେଶ ସେନାପତି ସାର୍‌ଙ୍କୁ । ସେତେବେଳେ ହୃଷୀକେଶ ସାର୍ ମୃତ୍ତିକା ବିଜ୍ଞାନ ଓ କୃଷି ରସାୟନ ବିଭାଗରେ କାର୍ଯ୍ୟ କରୁଥିବା ସର୍ବଭାରତୀୟ ନିରବଚ୍ଛିନ୍ନ ସାର-ପ୍ରୟୋଗ ପ୍ରକଳ୍ପ (AICRP on Long Term Fertilizer) କାର୍ଯ୍ୟନିର୍ବାହୀ ରୂପେ କାର୍ଯ୍ୟ କରୁଥା'ନ୍ତି ଏବଂ ମୁଁ ସେହି ପ୍ରକଳ୍ପର କନିଷ୍ଠ ବୈଜ୍ଞାନିକ ହିସାବରେ କାମ କରୁଥାଏ । ରଦ୍ଧୀଶ ଯେତେବେଳେ ହୃଷୀକେଶ ସେନାପତି ସାର୍‌ଙ୍କ ପାଖକୁ ଆସେ, ସେତେବେଳେ ସେ ମୋତେ ମଧ୍ୟ ଦେଖାକରିଥାଏ । ତା'ର ଭଦ୍ର ଏବଂ ନମ୍ର ବ୍ୟବହାର ମୋତେ ଆନନ୍ଦିତ କରିଥାଏ । ହୃଷୀକେଶ ସାର୍ ରଦ୍ଧୀଶର ଗବେଷଣା କାର୍ଯ୍ୟ ବିଷୟରେ ମଧ୍ୟ ମୋ ସହିତ ଆଲୋଚନା କରୁଥା'ନ୍ତି ଏବଂ ରଦ୍ଧୀଶ ମଧ୍ୟ ଆଲୋଚନାରେ ଅଂଶଗ୍ରହଣ କରୁଥାଏ । ଗବେଷଣା ବିଷୟରେ ରଦ୍ଧୀଶର ଆଗ୍ରହ, ଚେଷ୍ଟା ତଥା ଉତ୍ସାହ ଯୋଗୁଁ ମୁଁ ମଧ୍ୟ ତାକୁ ସମ୍ପୂର୍ଣ୍ଣରୂପେ ସହଯୋଗ କରିବାକୁ ଚେଷ୍ଟା କରୁଥାଏ । କ୍ରମେ କ୍ରମେ ରଦ୍ଧୀଶ ଏବଂ ମୋ ମଧ୍ୟରେ ସମ୍ପର୍କ ବଢ଼ି ବଢ଼ି ଚାଲୁଥାଏ । ଏହି ସମୟ ମଧ୍ୟରେ ସେ ପିଏଚ୍.ଡି. ପାଠ୍ୟକ୍ରମରେ ନାମ ପଞ୍ଜୀକରଣ

  

କରିସାରିଥାଏ ଏବଂ ହୃଷୀକେଶ ସାର୍ ତା'ର ଗାଇଡ୍ ହିସାବରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ୱୀକୃତି ପାଇସାରିଥାଆନ୍ତି । ରନ୍ଧୀଶ ମଧ୍ୟ ନିଜର ଗବେଷଣା କାର୍ଯ୍ୟକ୍ରମ ଆରମ୍ଭ କରୁଥାଏ ଆମ ଗବେଷଣାଗାରରେ । କିଛିଦିନ ପରେ ହୃଷୀକେଶ ସାର୍ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଡିନ୍, ପି.ଜି. ଏବଂ ଡି.ଆର୍.ଆଇ. ହିସାବରେ ନିଯୁକ୍ତି ପାଇ କୃଷି ମହାବିଦ୍ୟାଳୟ ଛାଡ଼ି ବିଶ୍ୱବିଦ୍ୟାଳୟ ସ୍ତରକୁ ଚାଲିଯିବାରୁ ତାଙ୍କ ସ୍ଥାନରେ ଡକ୍ଟର ଅସିତ କୁମାର ପାଲ ଆମ ପ୍ରକଳ୍ପର ନିର୍ବାହୀ ଅଧିକାରୀ ରୂପେ କାର୍ଯ୍ୟରେ ଯୋଗ ଦେଲେ ଏବଂ ରନ୍ଧୀଶ ତାଙ୍କୁ ନିଜ ଗବେଷଣା ପାଠ୍ୟକ୍ରମର ଅନ୍ୟତମ ସଦସ୍ୟ ରୂପେ ଗ୍ରହଣ କରିନେଲା । ମୁଁ ଯେହେତୁ ସେ ପ୍ରକଳ୍ପରେ କାମ କରୁଥିଲି, ତା'ର ଗବେଷଣା କାର୍ଯ୍ୟକୁ ମଧ୍ୟ ତଦାରଖ କରୁଥିଲି । ରନ୍ଧୀଶ ପ୍ରାଣିବିଜ୍ଞାନରେ ପିଏଚ୍.ଡି. କରିବାକୁ ପଞ୍ଜୀକରଣ କରିବା ସମୟରେ ତା'ର ସନ୍ଦର୍ଭର ବିଷୟ କୃଷି ରସାୟନ ବିଭାଗ ସମ୍ପର୍କିତ ହୋଇଥିବାରୁ ବିଭିନ୍ନ ପରୀକ୍ଷାଗୁଡ଼ିକୁ ସମ୍ପୂର୍ଣ୍ଣ କରିବାପାଇଁ ତାକୁ ଅଧିକ ପରିଶ୍ରମ ତଥା ଅଧିକ ସମୟ ଦେବାକୁ ପଡୁଥିଲା । କିନ୍ତୁ ସେଥିରେ ସେ ବିଚଳିତ ନ ହୋଇ ଆମ ବିଜ୍ଞାନ ଗାରକୁ ନିୟମିତ ଆସି ବିଭିନ୍ନ ପରୀକ୍ଷା ବିଷୟରେ ଜ୍ଞାନ ଆହରଣ କରି ସେଗୁଡ଼ିକ ନିଜ ଗବେଷଣାପାଇଁ ପ୍ରୟୋଗ କରୁଥିଲା । ସେହି ସମୟରେ ତା'ର ଭଦ୍ର, ଶାନ୍ତ, ଅମାୟିକ ବ୍ୟବହାର, ଧୈର୍ଯ୍ୟ, ବିଭିନ୍ନ ବିଷୟରେ ଶିଖିବାର ଇଛା ତଥା କାର୍ଯ୍ୟ କରିବାର ଆନ୍ତରିକତା ଦେଖି ମୁଁ ଅନେକ ସମୟରେ ଆଶ୍ଚର୍ଯ୍ୟ ହୋଇଯାଏ । ମୁଁ କୃଷି ବିଶ୍ୱବିଦ୍ୟାଳୟର କ୍ୱାର୍ଟର୍‌ରେ ରହୁଥିବାରୁ ତା'ର ଆବଶ୍ୟକ ସମୟରେ ସେ ମଝିରେ ମଝିରେ ଘରକୁ ଆସି ନିଜର ଗବେଷଣା କାର୍ଯ୍ୟକ୍ରମ ବିଷୟରେ ଆଲୋଚନା କରିଥାଏ । ସେ ପ୍ରାଣିବିଜ୍ଞାନରେ ସ୍ନାତକୋତ୍ତର କରିଥିଲେ ମଧ୍ୟ ନିଜର ଶିଖିବାର ଆଗ୍ରହ ଦୃଷ୍ଟିରୁ ମୃତ୍ତିକା ବିଜ୍ଞାନ ଓ କୃଷି ରସାୟନ ବିଭାଗର ବିଭିନ୍ନ ପରୀକ୍ଷାକୁ ଦେଖି ତଥା ଅଭ୍ୟାସ କରି ସେହିସବୁ ଗବେଷଣା ଉପରେ ସେ ଦକ୍ଷତା ଅର୍ଜନ କରିପାରିଥିଲା । ସମୟର ପରିବର୍ତ୍ତନ ସହିତ ଆମ ପ୍ରକଳ୍ପର ନିର୍ବାହୀ ଅଧିକାରୀଙ୍କର ପରିବର୍ତ୍ତନ ଘଟିଲା । ଡଃ. ଅସିତ୍ କୁମାର ପାଲ୍‌ଙ୍କର ସେହି ପ୍ରକଳ୍ପରୁ ଅନ୍ୟତ୍ର

ବଦଳି ହେଲା ଏବଂ ଡଃ. ମନୋରଞ୍ଜନ ପଟ୍ଟନାୟକ ସେହି ପଦବୀରେ ଯୋଗ ଦେଲେ । ସେ ନିଜର ଗବେଷଣା କାର୍ଯ୍ୟ ଆମ ଗବେଷଣାଗାରରେ ଜାରି ରଖିଥିଲା । ତା' ସହିତ ନିମାଟୋଲୋଜି ବିଭାଗର ସାର୍‌ମାନଙ୍କ ସହାୟତାରେ ସେହି ବିଭାଗରେ ମଧ୍ୟ କିଛି ଗବେଷଣା କାର୍ଯ୍ୟକ୍ରମ ଚାଲୁ ରଖିଥାଏ । ହୃଷୀକେଶ ସାର୍ ମଧ୍ୟ ତା'ର କାର୍ଯ୍ୟର ଅଗ୍ରଗତି ସମ୍ପର୍କରେ ମୋ ସହିତ ଆଲୋଚନା କରୁଥାଆନ୍ତି । ଇତି ମଧ୍ୟରେ ରଦ୍ଧୀଶ ମୌଳିକ କଳା ଓ ବିଜ୍ଞାନ ମହାବିଦ୍ୟାଳୟରେ ଡେମନ୍‌ଷ୍ଟ୍ରେଟର୍ ହିସାବରେ ଯୋଗଦାନ କରିଥାଏ ପ୍ରାଣିବିଜ୍ଞାନ (Zoology) ବିଭାଗରେ । ମୋର ମଧ୍ୟ ପଦୋନ୍ନତି ହୋଇଥାଏ ଏବଂ ମୁଁ ମୁଖ୍ୟ ବୈଜ୍ଞାନିକ ହିସାବରେ ସର୍ବଭାରତୀୟ ଜଳ ପରିଚାଳନା ପ୍ରକଳ୍ପ, ଚିପିଲିମାରେ ଯୋଗଦାନ କରିସାରିଥାଏ । ରଦ୍ଧୀଶର ପାଠ୍ୟକ୍ରମ ଅନୁସାରେ ତାକୁ କିଛିଦିନପାଇଁ କ୍ଲାସ୍ କରିବାକୁ ପଡ଼ିଲା । ସମୟ ସହିତ ତାଳଦେଇ ତା'ର ଫିଲ୍‌ଡ କାମ ମଧ୍ୟ ସରି ସରି ଆସୁଥାଏ । ତା'ର ପ୍ରଚେଷ୍ଟା ପଠନରେ ଦୁଇରୁ ତିନୋଟି ଗବେଷଣା ସନ୍ଦର୍ଭ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇସାରିଥାଏ । ଇତ୍ୟବସରରେ ହୃଷୀକେଶ ସାର୍ ବିଶ୍ୱବିଦ୍ୟାଳୟର କାର୍ଯ୍ୟରୁ ଅବସର ଗ୍ରହଣ କରିସାରିଥାଆନ୍ତି । ଯେହେତୁ ସେ ଫିଲ୍‌ଡ କାମ ସରି ଆସୁଥାଏ, ଆମେ ଦୁଇଜଣ ଯୋଜନା କରୁଥାଉ, ତା'ର ଗବେଷଣା ସନ୍ଦର୍ଭ (Thesis) ଲେଖିବାପାଇଁ । ମୁଁ ଚିପିଲିମାକୁ ଯିବା ସମୟରେ ମଧ୍ୟ ବିଶ୍ୱବିଦ୍ୟାଳୟ କ୍ୱାର୍ଟର୍‌ରେ ରହୁଥାଏ ଏବଂ ମୋର ପଛପଟ ଲାଇନ୍‌ରେ ରଦ୍ଧୀଶକୁ ମଧ୍ୟ ଗୋଟିଏ କ୍ୱାର୍ଟର୍ ମିଳିଥାଏ । ତେଣୁ ଅନେକ ସମୟରେ ସେ ମୋ କ୍ୱାର୍ଟର୍‌କୁ ଆସି ତା'ର ଗବେଷଣା ବିଷୟରେ ଆଲୋଚନା କରୁଥାଏ । ମୋର ଚିପିଲିମାରୁ ଭୁବନେଶ୍ୱରକୁ ବଦଳି ହେଲା ୨୦୧୪ ମସିହା ମାର୍ଚ୍ଚ ମାସରେ । ତା'ର ବାହାଘର ସମୟରେ ତା'ର ଗାଁକୁ ଯିବାକୁ ମୋତେ ବହୁତ ବାଧ୍ୟ କରିଥିଲା । ମୁଁ ହୃଷୀକେଶ ସାର୍‌ଙ୍କ ସହିତ ତା'ର ଗାଁକୁ ମଧ୍ୟ ଯାଇ ତା'ର ବାହାଘର ଭୋଜିରେ ଯୋଗ ଦେଇଥିଲି । ସେହି ସମୟରେ ମୋତେ ସୁଯୋଗ ମିଳିଥିଲା ତା'ର ବାପାଙ୍କ ସହିତ ମିଶିବାପାଇଁ । ତା'ର ପରିବାରର ସମସ୍ତଙ୍କର ଆତିଥ୍ୟ, ଶ୍ରଦ୍ଧା ଏବଂ ସମ୍ମାନ ଆଜି ମଧ୍ୟ ମୋର

ମାନସପଟରେ ଉଜ୍ଜୀବିତ । ମୁଁ ଭୁବନେଶ୍ୱରକୁ ଫେରିବା ପରେ ସେ ମୋତେ ବହୁତ ଥର ଭେଟ କରିଛି ଏବଂ ଆମେ କିପରି ଶୀଘ୍ର ଥେସିସ୍ କାମ ସାରିବା, ସେଥିପାଇଁ ପ୍ରାକ୍ ପ୍ରସ୍ତୁତି କରିଥିଲୁ । ସେ ସବୁବେଳେ ବ୍ୟସ୍ତ ହେଉଥିଲା, କିପରି ଥେସିସ୍ ଲେଖାଲେଖି ସାରି ଦେଇ ବାଣୀବିହାରରେ ଦାଖଲ କରିବାପାଇଁ । କିନ୍ତୁ ସେତେବେଳକୁ ତା'ର ଦେହ ବେଶି ଖରାପ ଆଡ଼କୁ ଗତି କରୁଥିଲା । ମୁଁ ବାରମ୍ବାର ତାକୁ ସେ ବିଷୟରେ ପଚାରୁଥିଲେ ମଧ୍ୟ ତା'ଠାରୁ ସନ୍ତୋଷଜନକ ଉତ୍ତର ପାଉ ନ ଥିଲି । ସେ କିନ୍ତୁ ବହୁତ ବ୍ୟସ୍ତ ବିବ୍ରତ ଜଣାପଡୁଥିଲା । ପ୍ରତ୍ୟେକ ମନୁଷ୍ୟର ସମସ୍ତ କାର୍ଯ୍ୟକଳାପକୁ ଭଗବାନ ନିୟନ୍ତ୍ରିତ କରିଥାଆନ୍ତି ସମସ୍ତଙ୍କର ଅଜାଣତରେ । କିନ୍ତୁ ମନୁଷ୍ୟ ଭଗବାନ୍ଙ୍କ କାର୍ଯ୍ୟକଳାପକୁ ବୁଝି ନ ପାରି ନିଜେ ବ୍ୟସ୍ତ ବିବ୍ରତ ହୋଇ ଦୁଃଖ ଭୋଗ କରେ । ଯାହାକୁ ଆମେ ଭିନ୍ନ ଭିନ୍ନ ନାମରେ ନାମିତ କରିଥାଉ । ଯେଉଁ ପିଏଚ୍.ଡି. କାମପାଇଁ ରଦ୍ଧୀଶ ଏତେ ବିଚଳିତ, ବ୍ୟସ୍ତ ଓ ବିବ୍ରତ ହେଉଥିଲା, ତାହା ସମ୍ପୂର୍ଣ୍ଣ ନ ହେବା ଥିଲା ବୋଧେ ପରମେଶ୍ୱରଙ୍କ ଇଚ୍ଛା । ଥେସିସ୍‌ର କାମ ସରିଥିଲା, ଲେଖାଲେଖି ମଧ୍ୟ ଅଧାରୁ ଅଧିକ ସରିଆସୁଥିବା ସମୟରେ ସବୁ କିଛି ଓଲଟ ପାଲଟ ହୋଇଗଲା ଏବଂ ତା'ର ଆଶା ଅଧାରେ ରହିଗଲା ।

ମୁଁ ବ୍ୟକ୍ତିଗତ ଭାବରେ ଏତେ କମ୍ ସମୟପାଇଁ ତା' ସହିତ ମିଶି ମଧ୍ୟ ଏଭଳି ଦୁଃଖଦ, ହୃଦୟ ବିଦାରକ ଘଟଣାକୁ ମୋ ମନ ଭିତରୁ ପୋଛିପାରୁ ନାହିଁ । ଭଗବାନ୍ଙ୍କ ନିକଟରେ ମୋର ଆନ୍ତରିକ ପ୍ରାର୍ଥନା ଯେ, ତା'ର ଅମର ଆତ୍ମାକୁ ସଦ୍‌ଗତି ଦିଅନ୍ତୁ । ଏହି ଏକବର୍ଷ ଭିତରେ ତା'ର ପରିବାର ପରିଜନମାନଙ୍କ ଉପରେ ଯେଉଁ ଦୁଃଖର ଢେଉ ବହିଗଲା, ତାକୁ ଅତିକ୍ରମ କରିବାପାଇଁ ଭଗବାନ୍ ମାନସିକ ଶକ୍ତି ଓ ସାହସ ଦିଅନ୍ତୁ । ପରିଶେଷରେ ଭଗବାନ୍ଙ୍କଠାରେ ଏତିକି ଅଳି, ତା'ର ସ୍ମୃତିକୁ ପାଥେୟ କରି ଆଗକୁ ବଢ଼ିବାପାଇଁ ସମସ୍ତଙ୍କୁ ଧୈର୍ଯ୍ୟ ତଥା ସାହସ ପ୍ରଦାନ କରନ୍ତୁ ।







# ଏ ଯୁଗର ଶ୍ରବଣକୁମାର

ଆଦିତ୍ୟ ନାରାୟଣ ମିଶ୍ର
ୟୁନିଟ୍ - ୮, ଭୁବନେଶ୍ୱର

ଜୀବନରେ ଶ୍ରୀଶ୍ରୀଠାକୁରଙ୍କୁ ଧରିବାଠାରୁ ଯେଉଁ କିଛି କିଛି ବ୍ୟକ୍ତିତ୍ୱ ଓ ତାଙ୍କ ପରିବାରରେ ଶ୍ରୀଶ୍ରୀଠାକୁରଙ୍କ ଭାବଧାରା ଓ ଚଳନି ପରିସ୍ଫୁଟ ହୁଏ, ସେହିମାନଙ୍କ ଭିତରୁ ମୋର ସମ୍ମାନନୀୟ ଭାଇନା ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ ହେଉଛନ୍ତି ଅନ୍ୟତମ । ପିଲାଟି ଦିନରୁ ତାଙ୍କ ଅଧୀନରେ ସ୍କୁଲ୍‌ରେ ପାଠ ପଢ଼ିବା, ସତ୍‌ସଙ୍ଗରେ ଯୋଗଦେବା ଏବଂ ଠାକୁରଙ୍କ ବିଷୟରେ ବହୁତ ପ୍ରେରଣା ପାଇଛି, ତାଙ୍କ ସହିତ ମିଶି ମୋର ଭୁଲ୍ ତ୍ରୁଟି ସୁଧାରି ପାରିଛି । ପରବର୍ତ୍ତୀ ସମୟରେ ତାଙ୍କର ସୁଯୋଗ୍ୟ ସନ୍ତାନ ଶ୍ରୀମାନ୍ ରନ୍ଧୀଶ ଭୁବନେଶ୍ୱରରେ ରହିବାର ହୁଏ । ମୁଁ ଆଗରୁ ଭୁବନେଶ୍ୱରରେ ରହୁଥିଲି । ସେ ଆସିବା ପରେ ଆମେ ୟୁନିଟ୍-୮ ଓ ଓ.ୟୁ.ଏ.ଟି. ପାଖରେ ବହୁ ସମୟରେ ସତ୍‌ସଙ୍ଗ କାମରେ ଯୋଗ ଦେଇଛୁ । ତା'ର ମାର୍ଜିତ ବ୍ୟବହାର ଏବଂ ସୁମଧୁର କଥା ଯୋଗୁଁ କେବଳ ଗାଁ ନୁହେଁ, ଭୁବନେଶ୍ୱରରେ ମଧ୍ୟ ସମସ୍ତଙ୍କ ଅତି ଆଦରଣୀୟ ହୋଇପାରିଥିଲା । କେବେହେଲେ ତା'ର ଚଳନିରେ ମୁଁ ଭୁଲ୍ ତ୍ରୁଟି ଦେଖିପାରେନା । ଆଶ୍ରମକୁ ବହୁବାର ସାଙ୍ଗ ହୋଇ ଯାଇଛୁ । ଏତେ କମ୍ ବୟସରୁ, ତା'ର ବୁଝିବା ଓ ବୁଝାଇବା ବହୁତ ସୁନ୍ଦର ଓ ଗ୍ରହଣଯୋଗ୍ୟ ହୋଇଥିଲା । ଥରେ ଭୁବନେଶ୍ୱରରେ ଏକ ସତ୍‌ସଙ୍ଗ ହେଉଥିଲା । ସେଠି ମୁଁ ଓ ରନ୍ଧୀଶ ଉପସ୍ଥିତ ଥିଲୁ । ସତ୍‌ସଙ୍ଗ ପରେ ମୁଁ ଦେଖିଲି, କୀର୍ତ୍ତନରେ ଉଚ୍ଚାରଣ ହେଉଥିବା କିଛି ଶବ୍ଦର ଭୁଲ୍‌କୁ ରନ୍ଧୀଶ ଜାଣିପାରି କୀର୍ତ୍ତନ କରୁଥିବା ଭାଇ ଜଣକୁ ଶବ୍ଦର ବ୍ୟାଖ୍ୟା କରି ବୁଝାଉଥିଲା । ତା'ର ଭାଷାଜ୍ଞାନ ଓ କହିବାର ଶୈଳୀ ବହୁତ ହୃଦୟସ୍ପର୍ଶୀ ଥିଲା । ମୁଁ ଦେଖିଛି, ତା' ବୋଉଙ୍କ ଦେହ ଯେତେବେଳେ ଖରାପ ଥିଲା, ସେ

ଗାଁକୁ ଯାଇ ବୋଉଙ୍କୁ ଆଣି ମେଡିକାଲ୍‌ରେ ଆଡ୍‌ମିସନ କରିଥିଲା ଓ ବୋଉଙ୍କ ପାଇଁ ଉଜାଗର ରହି ତାଙ୍କର ସେବା କରିଥିଲା ଏବଂ ବୋଉ ସମ୍ପୂର୍ଣ୍ଣ ଭଲ ହେବା ପର୍ଯ୍ୟନ୍ତ ନିଜ କ୍ୱାର୍ଟର୍‌ରେ ରଖି ପରେ ଗାଁରେ ନେଇ ଛାଡ଼ି ଆସିଥିଲା । ଏଥିରୁ ତା'ର ନିଜ ବୋଉଙ୍କୁ ସେ କେତେ ଭଲ ପାଉଥିଲା ଏବଂ ମା' ପ୍ରତି ନିଜର କର୍ତ୍ତବ୍ୟ ନିର୍ବାହ କରୁଥିଲା, ଜଣାପଡ଼େ । ବାସ୍ତବରେ ସେହିଁ ଥିଲା ଏ ଯୁଗର ଶ୍ରବଣକୁମାର ।

ସବୁ ସମୟରେ ନିଜ ନନା (ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ)ଙ୍କ କଥା କହି ତାଙ୍କ ପ୍ରତି ତା'ର ସମ୍ମାନ ଓ ଭଲପାଇବା ଦର୍ଶାଇଥାଏ । ପିତାଙ୍କ ପ୍ରତି ପୁତ୍ରର କର୍ତ୍ତବ୍ୟବୋଧ ଶ୍ରୀଶ୍ରୀଠାକୁରଙ୍କ ଧାରାରେ ସେ ନିଜ ଜୀବନରେ ପରିପାଳିତ କରୁଥିଲା । ସେ ତା'ର ନନା ଓ ବୋଉଙ୍କୁ ବହୁତ ଭଲ ପାଉଥିଲା ଓ ସମ୍ମାନ ଦେଉଥିଲା । ଏତେ ଧୀର ଭାବେ କଥାଗୁଡ଼ିକ କହେ, ସେଗୁଡ଼ିକ ସମସ୍ତଙ୍କ ହୃଦୟସ୍ପର୍ଶୀ ହୋଇଥାଏ । ମୁହଁକୁ ଚାହିଁ କଥାହେବା କେବେହେଲେ ମୁଁ ଦେଖିନି । ସବୁ ସମୟରେ ତଳକୁ ଚାହିଁ କଥା ହୁଏ । ପରମପିତାଙ୍କ ପାଖକୁ ସେ ଯେ ଅକାଳରେ ଚାଲିଯିବ ଏବଂ ତା'ପାଇଁ ମୋତେ କିଛି ଲେଖିବାକୁ ପଡ଼ିବ, ଏକଥା କେବେହେଲେ ଭାବିପାରି ନ ଥିଲି । ଆଜି ସେ ପରମପିତାଙ୍କ ପାଖକୁ ଯାଇ ଏ କଲୁଷିତ ଦୁନିଆଁରୁ ଯେ ରକ୍ଷା ପାଇଯାଇଛି, ଏହାହିଁ ତା'ର ଠାକୁରଙ୍କ ପ୍ରତି ଭଲ ପାଇବାର ନିଦର୍ଶନ । ତା'ର ବିୟୋଗରେ ତା'ର ନନା କିଭଳି ଭାବେ ଅସୀମ ଧୈର୍ଯ୍ୟର ସହିତ ତା'ର ପାରଲୌକିକ କ୍ରିୟା ସମାପନ କଲେ, ତାହା କେବଳ ଶ୍ରୀଶ୍ରୀଠାକୁରଙ୍କୁ ଜୀବନରେ ଧରିଥିବା ଯୋଗୁଁ ସମ୍ଭବ ହେଲା । ପରମପିତା ତା'ର ନନା, ବୋଉଙ୍କୁ ଅସୀମ ଧୈର୍ଯ୍ୟ ଦିଅନ୍ତୁ ଏବଂ ରଶ୍ମୀଶ ପରମପିତାଙ୍କ ଇଚ୍ଛା ଅନୁଯାୟୀ ପୁଣି ଏକ ନୂତନ ଜୀବନ ପାଇ ଶ୍ରୀଶ୍ରୀଠାକୁରଙ୍କୁ ଭଲପାଇ ତାଙ୍କୁ ପ୍ରତିଷ୍ଠା କରୁ, ଏହାହିଁ ଶ୍ରୀଶ୍ରୀଠାକୁରଙ୍କ ପାଖରେ ମୋର ପ୍ରାର୍ଥନା ।



  

# ଅମର ଆତ୍ମା ରବ୍ଧୀଶଙ୍କ ସମ୍ପର୍କରେ

**ଅଧ୍ୟାପକ ଜ୍ଞାନଜ କୁମାର ସାମନ୍ତରାୟ**
ଆଦିକବି ସାରଳାଦାସ ମହାବିଦ୍ୟାଳୟ, ତିର୍ତ୍ତୋଲ

ଶ୍ରୀମାନ୍ ରବ୍ଧୀଶ ୨୦୦୦-୦୧ ଶିକ୍ଷାବର୍ଷରେ ଜଣେ +୨ ବିଜ୍ଞାନ ଛାତ୍ର ଭାବରେ ଆଦିକବି ସାରଳାଦାସ କଲେଜରେ ପ୍ରବେଶ କରିଥିଲେ । ତା' ପୂର୍ବରୁ ତାଙ୍କର ପିତା ହୃଷୀକେଶ ଆଚାର୍ଯ୍ୟଙ୍କୁ ମୁଁ ଭଲଭାବରେ ଜାଣିଥାଏ । ଜଣେ ଉଚ୍ଚକୋଟୀର ବ୍ୟକ୍ତିତ୍ୱ ତଥା ଗରେଇ ହାଇସ୍କୁଲ୍‌ର ପ୍ରଧାନ ଶିକ୍ଷକ ଏବଂ ଠାକୁର ଅନୁକୂଳଚନ୍ଦ୍ରଙ୍କର ସହପ୍ରତିରତ୍ୱିକ ଭାବରେ । ସେହି ସମୟରେ ଆମର ସାଥୀ ଏନ୍.ସି.ସି. ଅଫିସର୍ ତଥା ଗରେଇ ହାଇସ୍କୁଲ୍‌ର ସହକାରୀ ବିଜ୍ଞାନ ଶିକ୍ଷକ ଶ୍ରୀଯୁକ୍ତ ହୃଦାନନ୍ଦ ମିଶ୍ର ମୋ ସହିତ ସାକ୍ଷାତ୍ ହୋଇ ରବ୍ଧୀଶ ସମ୍ପର୍କରେ ମୋତେ ଅବଗତ କରାନ୍ତି ଏବଂ ସେହିଦିନଠାରୁ ମୋର ଘନିଷ୍ଠତା ଆସେ ରବ୍ଧୀଶଙ୍କ ସହିତ ।

ମୁଁ ତାଙ୍କୁ ଭଲପାଏ । ତାଙ୍କର ସରଳ, ନିଷ୍କପଟ, ଅମାୟିକ ରୁଚିସମ୍ପନ୍ନ ବ୍ୟବହାର ମୋତେ ମୁଗ୍ଧ କରେ ଏବଂ ତୃପ୍ତ କରେ । ଯେଉଁଥିପାଇଁ ପ୍ରତ୍ୟେକ କାର୍ଯ୍ୟଦିବସରେ କଲେଜରେ ମୁଁ ତାଙ୍କୁ ଥରେ ନ ଦେଖିଲେ ମୋତେ ଭଲ ଲାଗେ ନାହିଁ । ମିଳିବା ପାଇଁ ପିଲାଙ୍କଦ୍ୱାରା ହେଉ କିମ୍ବା ଅଫିସର କର୍ମଚାରୀଙ୍କଦ୍ୱାରା ତାଙ୍କୁ ଡକାଏ ।

ସେ ପାଞ୍ଚବର୍ଷପାଇଁ ଆମ ମହାବିଦ୍ୟାଳୟରେ ଅଧ୍ୟୟନ କଲେ । ତା'ରି ଭିତରେ ମୋର କାହିଁକି, ସେ ମହାବିଦ୍ୟାଳୟର ପ୍ରତ୍ୟେକ ଛାତ୍ରଛାତ୍ରୀ, କର୍ମଚାରୀ ଓ ଅଧ୍ୟାପକ, ଅଧ୍ୟାପିକା ଏବଂ ଅଧ୍ୟକ୍ଷ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ । ସମସ୍ତଙ୍କ ମୁହଁରେ ପ୍ରଶଂସା, ଜଣେ ଆଦର୍ଶ ଛାତ୍ର ଏବଂ ତାଙ୍କ ଚୁମ୍ବକୀୟ ବ୍ୟକ୍ତିତ୍ୱପାଇଁ ।





ତାଙ୍କର ହସ ହସ ମୁହଁ, ସୁନ୍ଦର ବ୍ୟବସ୍ଥିତ ଚେହେରା, ସମସ୍ତଙ୍କୁ ଯଥାମାନ୍ୟ, ରୁଚିସମ୍ପନ୍ନ, ପ୍ରଜ୍ଞାଶୀଳ ବ୍ୟବହାର ଏବେବି ମନେପଡ଼େ । ମନର ସମୁଦ୍ର ଭିତରେ ସ୍ମୃତିଢେଉସବୁ ଗର୍ଜନ କରେ କୂଳ ଲଙ୍ଘିବାକୁ । ମନରେ ଅନେକ ସ୍ମୃତି ରଦ୍ଧୀଶ ସମ୍ପର୍କରେ । ତା'ପାଇଁ ଭାଷା ନାହିଁ । ଆବେଗ ଆସେ । କଲମ ଅଟକି ଯାଏ । ଏସବୁ ହେବାର କାରଣ, ମୁଁ ତା'ର କେହି ନ ହେଲେ ବି ଜଣେ ଶିକ୍ଷକ ଭାବରେ ଖୁବ୍ ନିକଟରୁ ଅନୁଭବ କରିଥିଲି ରଦ୍ଧୀଶକୁ ।

ମହାବିଦ୍ୟାଳୟରେ ଅଧ୍ୟୟନରତ ଥିବାବେଳେ ଜଣେ ଭଲ ଛାତ୍ର ଭାବରେ ତାଙ୍କର ଖ୍ୟାତି ଥିଲା । ସେ ପ୍ରାଣିବିଜ୍ଞାନରେ ପ୍ରଥମ ଶ୍ରେଣୀରେ ସ୍ନାତକ ପାସ କରିଥିଲେ ମଧ୍ୟ ତାଙ୍କ ମନରେ ଅହଂକାର ନ ଥିଲା । ଅଧ୍ୟୟନ ସମୟରେ ପାଠପଢ଼ା ବ୍ୟତୀତ ମହାବିଦ୍ୟାଳୟରେ ଅନ୍ୟାନ୍ୟ ଯେକୌଣସି କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ, ସେ ସେଥିରେ ସକ୍ରିୟ ଅଂଶଗ୍ରହଣ ପୂର୍ବକ ଛାତ୍ରଛାତ୍ରୀ ଏବଂ ଅଧ୍ୟାପକମଣ୍ଡଳି ମଧ୍ୟରେ ସେତୁ ଭାବରେ କାର୍ଯ୍ୟ କରୁଥିଲେ । ଯାହାଫଳରେ ମହାବିଦ୍ୟାଳୟରେ ବହୁ ଭାବରେ ବିଭିନ୍ନ ସମୟରେ ଉପୁଜୁଥିବା ଛାତ୍ର ଅଶାନ୍ତିକୁ ମଧ୍ୟ ପ୍ରଶମିତ କରାଯାଇପାରୁଥିଲା ।

ଛାତ୍ର ସଂସଦ ନିର୍ବାଚନରେ, କଲେଜ କ୍ୟାମ୍ପସ୍ ଉଷ୍ମଥିବା ସମୟରେ ତାଙ୍କର ଉପସ୍ଥିତି କଲେଜ କର୍ତ୍ତୃପକ୍ଷଙ୍କୁ ବହୁତ ଲାଭ ମିଳୁଥିଲା । ସେ ନିର୍ବାଚନରେ ସିଧାସଳଖ ଲଢୁ ନ ଥିଲେ ମଧ୍ୟ ସମସ୍ତ ଛାତ୍ରନେତାଙ୍କର ସେ ଥିଲେ ନେତା । ତାଙ୍କର ସୁଚିନ୍ତିତ ଏବଂ ଗଠନମୂଳକ ପରାମର୍ଶକୁ ସମସ୍ତେ ମାନିନେଉଥିଲେ ।

କଲେଜରେ ଲଗାତର ଭାବରେ Literary Champion ହେବାର ଗୌରବ ଅର୍ଜନ କରିଥିଲେ । ବକ୍ତୃତା, ପ୍ରବନ୍ଧ, କବିତା ଓ ଅନ୍ୟାନ୍ୟ ପ୍ରତିଯୋଗିତାରେ ତାଙ୍କର ଦକ୍ଷତା ଓ ପଟୁତା ସେ ପ୍ରମାଣିତ କରିସାରିଥିଲେ । ବିଶେଷ ଭାବରେ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀରେ ଜଣେ କ୍ୟାଡେଟ୍‌ରୁ କ୍ୟାରିଅର୍ ଆରମ୍ଭ କରି Senior Under Officer ପର୍ଯ୍ୟନ୍ତ ଦକ୍ଷତାର ସହିତ କାର୍ଯ୍ୟକରି ବହୁଥର Best Cadet ହୋଇ DDG NCC, Odishaଙ୍କଠାରୁ ପୁରସ୍କାର

  

ହାସଲ କରିବାରେ ସକ୍ଷମ ହୋଇଥିଲେ । ସେ ଅନ୍ୟ କ୍ୟାଡେଟ୍‌ମାନଙ୍କର ଆଦର୍ଶ ଥିଲେ । ସେ ପ୍ୟାରେଡ୍ ପଢ଼ିଆଠାରୁ ଆରମ୍ଭ କରି ତିର୍ତ୍ତୋଲରେ ଅନୁଷ୍ଠିତ ବିରାଟ ସାଂସ୍କୃତିକ ଚେଲିତୋଳ ବୋଇତ ବନ୍ଦାଣ ଉତ୍ସବ ଓ ବାଲିଯାତ୍ରାରେ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ନେତୃତ୍ୱ ନେଇ ପୋଲିସ୍ ସହିତ ଶାନ୍ତିଶୃଙ୍ଖଳା ରକ୍ଷା କରିବାରେ ଜଗତ୍‌ସିଂହପୁର ଏସ୍.ପି. ଏବଂ ଜିଲ୍ଲାପାଳଙ୍କଠାରୁ ପ୍ରଶଂସାପତ୍ର ମଧ୍ୟ ପାଇଛନ୍ତି । ସେ ଠାକୁର ଅନୁକୂଳଚନ୍ଦ୍ରଙ୍କର ଏକାନ୍ତ ଶିଷ୍ୟ ହୋଇ ଖାଦ୍ୟରେ ବିଶେଷ କଟକଣା ଥାଇ ମଧ୍ୟ, ସେ ଭାରତବର୍ଷର ବିଭିନ୍ନ ଭାଗରେ କ୍ୟାମ୍ପ୍‌ରେ ଯୋଗଦେବାରେ ସକ୍ଷମ ହୋଇଥିଲେ । ଫଳସ୍ୱରୂପ ଏନ୍.ସି.ସି.(ସି.) ପରୀକ୍ଷାରେ 'ବି' ଗ୍ରେଡ୍‌ରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ବ୍ୟକ୍ତିଗତ ସ୍ତରରେ ସେ ମୋ ପରିବାରର ଏକାନ୍ତ ନିକଟତମ ଥିଲେ । ସେ ଆମ ଘରକୁ ଆସନ୍ତି । ମୋର ପତ୍ନୀ, ପୁଅ ରାଜା ଓ ଝିଅ ପୂଜା ଏମାନଙ୍କ ସହିତ ବାର୍ତ୍ତାଳାପ କରନ୍ତି । ମୁଁ ଏଠାରେ କହିରଖେ ଯେ, ମୋର ପତ୍ନୀଙ୍କ ଦେହ ଭୀଷଣ ଅସୁସ୍ଥ ଥିବା ସତ୍ତ୍ୱେ ସେ ମୋତେ ରବ୍ଦୀଶଙ୍କ ବିବାହରେ, ଭୋଜିରେ ଏବଂ ସତ୍‌ସଙ୍ଗରେ ଯୋଗଦେବାପାଇଁ ଉତ୍ସାହିତ କରିଥିଲେ; କିନ୍ତୁ ଭାଗ୍ୟର ବିଡ଼ମ୍ବନା, ରବ୍ଦୀଶ ବିୟୋଗର ଦୁଇମାସ ପୂର୍ବରୁ ମୋର ପତ୍ନୀଙ୍କର ଅକାଳ ବିୟୋଗ ଘଟିଲା । ମୁଁ ଯେତେବେଳେ ଦୁଃଖରେ ମ୍ରିୟମାଣ, ସେହି ସମୟରେ ରବ୍ଦୀଶଙ୍କ ଦେହାନ୍ତ ମୋତେ ସ୍ତବ୍ଧ କରିଦେଇଥିଲା । ମୁଁ ମଧ୍ୟ ଏପରି ଦାରୁଣ ଦୁଃଖରେ କିଛିଦିନ ଭାଙ୍ଗିପଡ଼ିଲି ଏବଂ ତା'ପରେ ମନର ନିୟନ୍ତ୍ରଣ ଆଣି ସାହସ ଯୋଗାଡ଼ କରି କୁନାନନା (ସତ୍ୟବାନ ତ୍ରିପାଠୀ, ସ.ପ୍ର.ର)ଙ୍କୁ ନେଇ ଲଥାଙ୍ଗ ଗଲି । ସେଠି ହୃଷୀକେଶ ଭାଇନା ଓ ତାଙ୍କର ପରିବାରକୁ ସାକ୍ଷାତ୍ କଲାବେଳର ଅନୁଭୂତି ଏବେବି ମୋର ମାନସପଟରେ ତାଜା ଅଛି ।

ହୃଷୀକେଶ ଭାଇନା ଏକ ଭିନ୍ନ ଧରଣର ବ୍ୟକ୍ତିତ୍ୱ । ସେ ସୁବିଧା ଓ ଅସୁବିଧାରେ ଏକାପ୍ରକାର ଜଣାଯାଆନ୍ତି । ଯାହାଫଳରେ ତାଙ୍କ ଅସୁବିଧା ଓ ଦୁଃଖର ଟେର ଅନ୍ୟମାନେ ଜାଣିପାରନ୍ତି ନାହିଁ । ତେଣୁ ସେତେବେଳର ଯେଉଁ ଦୁଃଖଦ ପରିସ୍ଥିତି ।





ଘରେ ବୃଦ୍ଧା ମା', ପୁତ୍ର ଛାଡ଼ିଯାଇଥିବା ଆଠମାସର ନବବଧୂ, ପତ୍ନୀ, ପାରିପାର୍ଶ୍ୱିକ ଲୋକଙ୍କ ସହିତ ତାଙ୍କର ଯେଉଁ ବ୍ୟବହାର (Interaction), ସେଥିରେ ଆବେଗ, ଦୁଃଖଯନ୍ତ୍ରଣା ମିଶ୍ରିତ ଦାୟିତ୍ୱକତା; କିଛି ନ ହେବାର, ସବୁ ସମ୍ଭାଳିବାର ବା ସହିବାର ଏକ ନିଛକ ଅଭିନୟ ନୁହେଁ, ଏକ ବାସ୍ତବାୟିତ ବ୍ୟବହାର ତାଙ୍କର ଅନ୍ତରଆତ୍ମାକୁ ଆନ୍ଦୋଳିତ କରୁଥିଲା ।

ତେଣୁ ଏହିଭଳି ଏକ ଗୁରୁତ୍ୱପୂର୍ଣ୍ଣ ପୃଷ୍ଠଭୂମିରେ, ମୋର ମନେପଡ଼େ ଏକ ଘଟଣା । ସେଦିନ କପିଳବାସ୍ତୁ ରାଜ୍ୟର ରାଜା ଶୁଦ୍ଧୋଧନ ନିଜ ପୁଅ ସିଦ୍ଧାର୍ଥର ବୈରାଗ୍ୟ ଭାବନେଇ, ରାଜ୍ୟର ସବୁଠାରୁ ସୁନ୍ଦରୀ ବୁଦ୍ଧିମତୀ, ଗୋପା ନାମ୍ନୀ କନ୍ୟା ସହିତ ବିବାହ କରାଇଲେ । କିନ୍ତୁ ପୁତ୍ର ସିଦ୍ଧାର୍ଥଙ୍କ ମନ ବୁଝି ନ ଥିଲା । ସେ ମାନବଜାତିର ଉଦ୍ଧାର ପାଇଁ, ପରିବାର, ପିତାମାତା, ପତ୍ନୀ, ଆତ୍ମୀୟସ୍ୱଜନଙ୍କୁ ଛାଡ଼ି ସେ ଅଲଗା ଏକ ରାଜ୍ୟକୁ ଚାଲିଯାଇଥିଲେ — "ବୁଦ୍ଧଂ ଶରଣଂ ଗଚ୍ଛାମି ଓ ଧର୍ମଂ ଶରଣଂ ଗଚ୍ଛାମି" ଉଦ୍‌ଘୋଷଣା କରି ।

ଅତଏବ, ସ୍ୱର୍ଗତ ରବୀଶ ଆଜି ଆମ ପାଖରେ ନାହାନ୍ତି । ସେ ସେହି ଧର୍ମୀୟ ରାଜ୍ୟ ଦୟାଲ ଦେଶକୁ ଯାଇଛନ୍ତି । ତାଙ୍କର ଅମର ଆତ୍ମା ପରମ ଦୟାଲ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ସାନ୍ନିଧ ଲାଭ କରୁ । ଆଜିର ଏହି ପ୍ରଥମ ଶଦ୍ଧବାର୍ଷିକୀରେ ମୋର ତାଙ୍କ ମହାନ ଆତ୍ମା ପ୍ରତି ଏତିକି ପ୍ରାର୍ଥନା ।

"Thy, You may come again
To the Good Earth Wearing new custumes
To create goodness and pleasure
In the hearts and minds of all
The nearer and dearer."



  

# The Biography of a Beautiful Flower which wilted in a short time

**Prof. Dr. C. S. K. Mishra**
HOD, Zoology
College of Basis Science & Humanities
O.U.A.T., Bhubaneswar-3

We in the Department of Zoology are like members of a closely bonded family. This culture has been developed for long years which have helped us in uplifting the standard of education in addition to providing motivation to our students to achieve their targets in life. We have been emphasizing on the overall intellectual development for our students. Four years back the department was fortunate to have a bright, well mannered, ambitious boy with a lot of dreams in his eyes. He was none other than Rudhish Acharya who joined as Demonstrator and from the day one performed his duties meticulously. In no time he took the initiative to organize the laboratories in spite of his assignments to conduct the practial classes. In no time he was apprecited by both students and teachers due to his sincerity and hard work. I have closely interacted with him during leisure time and discussed about his career ambitions. I have been motivating him to complete his Ph.D. and assured him to provide all help.

Among the many noble qualities I noticed in Rudhish is his love and respect for his parents. When he attained

marriabeable age, I asked him what kind of girl he would prefer ? He politely replied, "Sir, I would prefer any girl my parents will decide suitable for me, since I know they wll make the right choice." Today, you hardly find a son like Rudhish with so much of love and affection for parents. I attended his marriage and he was very happy after the marriage. But God's wish was different. For some months I noticed that something was wrong with him since he was not physically well. When I enquired about his health, he always said, "Sir, don't worry it is a minor problem and I will be ok soon." For two months his health deteriorated and suddenly he left us and his family in grief and despair. It was an extremely painful day for everyone in the Zoology department and for me it was a huge personal loss. I have been praying God to give courage to his parents and wife to face the irreparable loss. We will remember Ruddhis forever.

On bahalf of all the students and staff of Zoology department I must be grateful to Mr. Hrusikesh Acharya (Rudhish's father) for donating all his books with an almirah to the department's Seminar Library which has been named "Rudhish Acharya Memorial Library".

May his love and affection guide us to move ahead and see that the Zoology department becomes a 'Center of Excellence' which will be the greatest tribute to him.



  

# Memory : I re-call

**Samrudhi Nayak**
Research Fellow
Department of of Zoology
O.U.A.T., Bhubaneswar-3

The journey was short-lived but the memories will last forever. Recalling them will unfortunately not bring back the person, but will, at least, let us be with them for a few short moments in our thoughts.

With due respect to Rudhish Sir.

I am very obliged to take this opportunity to write a few lines about Sir.

I met him first, in the Zoology department of our college, way back on 14th September 2011. Since then I knew him as a very sincere and dedicated worker, a little reserved but soft hearted.

In those three years we had many unforgettable experiences which shall remain always with me. We had many discussions about many things in life where I always defended my arguments vehemently. But he always used his experiences to advise us wisely. something I realised in retrospect. We discovered in him a genuine spirit, a thoughtful writer and a poet. But I bow down my head before him when I remember how much of an honest devotee he was of his parents.

One thing about Sir that will remain everlastingly in my memory is the principles he had in particular which he followed strictly.

Though destiny has created a never ending distance between us much earlier than we had expected, yet he will always remain with us in our prayers.

May his sousl rest in peace.



## ❖ ଚିରଞ୍ଜୀବ ସ୍ମରଣେ ❖



## ଆତ୍ମୀୟ-ସ୍ୱଜନଙ୍କ ଶ୍ରଦ୍ଧାଞ୍ଜଳି

---

"ଚିତାନଳେ ଭସ୍ମ ନୁହେଁ ସେନେହ ବନ୍ଧନ,
ଶ୍ମଶାନ ନୁହଁଇ ଜୀବ ଶେଷ ପରିସୀମା ।
କେବେ କାହିଁ ହେବ ପୁଣି ଶୁଭ ସମ୍ମେଳନ,
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ ମାଧୁରିମା ॥"

  

# ରବୀଶ ସ୍ମୃତିରେ ପଦେ

**ଶ୍ରୀମତୀ ଉଷାରାଣୀ ପଢ଼ିଆରୀ**
(ପିଉସୀନାନୀ)
ପାଣିଶାଳିଆ, ଜଗତ୍‌ସିଂହପୁର

ସକାଳୁ ସକାଳୁ କଥାଟା ଗାଁରୁ ସହର, ସହରରୁ ଜିଲ୍ଲାସାରା ବିଜୁଳି ବେଗରେ ଖେଳିଗଲା – ରବୀଶ ଆଉ ନାହିଁ । ମନଟା ବୁଝୁନି କି କାନକୁ ବିଶ୍ୱାସ ହେଉନି । ଭାଦ୍ରବ ମାସ ତା ୧୮.୮.୨୦୧୪ ରିଖ ଦିନ ୯ଘଣ୍ଟା ସମୟରେ ଫୋନ୍‌ରେ ଶୁଣିଲି । ମୃତ୍ୟୁ ଆସେ, କିପରି ଆସେ ? ଲୁଚି ଛପି ଆସେନା କି ବାଦ୍ୟ ବଜାଇ ଆସେ ନାହିଁ । ଏପରି ମୃତ୍ୟୁ ଓହ୍ଲେଇ ଆସେ ଏମିତି ଆସେ ଯେ – ମଣିଷ ସ୍ୱପ୍ନରେ ଭାବେନା । କେବଳ ଭାବନା ଓ ଦୀର୍ଘଶ୍ୱାସକୁ ସମ୍ୱଳ କରି ବଞ୍ଚିରୁହେ । କଥାରେ ଅଛି – ଗଡ଼ିଗଲା ସମୟ ବୋହିଗଲା ପାଣି ଚାଲିଗଲେ ଆଉ ଫେରିଆସେ ନାହିଁ । ସେଦିନ ଦୁଃଖକୁ ମୁଁ ମରିବା ପର୍ଯ୍ୟନ୍ତ ଭୁଲିପାରିବି ନାହିଁ ।

ରବୀଶର ମୃତ୍ୟୁକୁ ଏକବର୍ଷ ହେଲାଣି; କିନ୍ତୁ ସେ ଦିନର ସ୍ମୃତିକୁ ଭୁଲିବା ସମ୍ଭବ ନୁହେଁ । ଗୋଟିଏ ମୁହୂର୍ତ୍ତ ନାହିଁ ଯେ ତା' କଥା ମନେପଡ଼େ ନାହିଁ । ତା'ର ସେହି ସୁନ୍ଦର ରୂପ, ସୁନ୍ଦର ଚାଲି, ମିଠା ମିଠା ନାନୀ ଡାକ, ବଡ଼ମଣିଷ ପରି ଉପଦେଶ ଦେବା – ନାନୀ ! ଠିକ୍ ସମୟରେ ପ୍ରାର୍ଥନା କର, ନାମ ଧ୍ୟାନ କର, ଠାକୁରଙ୍କ ବହି ପଢ଼ାପଢ଼ି କର; ତୋର କ'ଣ ଜଞ୍ଜାଳ ଅଛି ? ସବୁବେଳେ ସେ ମୋତେ କୁହେ – ସମୟ ମୋଟେ ନଷ୍ଟ କରିବୁନି, ସମୟ ଗଲେ ଆଉ ଫେରିବନି । ତା'ର ପିଲାଦିନୁ ବହି ପଢ଼ିବାରେ ଆଗ୍ରହ । ବହି କିଣିବା, ବହି ପଢ଼ିବା ନିତିଦିନିଆ ଅଭ୍ୟାସ । ସେ ପାଞ୍ଚ ଛଅ ବର୍ଷରୁ ଖେଳିବାକୁ ଭଲପାଏ

ନାହିଁ । ବଡ଼ମଣିଷଙ୍କ ପରି ପିଲା ଖେଳୁଥିଲେ ଦେଖେ । ବଡ଼ମଣିଷଙ୍କ ପରି କଥା କୁହେ । ସେ ଆମ ପରିବାରକୁ ଆସିଥିଲା ଜଣେ 'ମହାପୁରୁଷ'ଙ୍କ ଭଳି ବୋଲି ମୋର ମନେହୁଏ । ଆମେ ସମସ୍ତେ ଜାଣୁ ଯେ, ଦିନେ ନା ଦିନେ ସମସ୍ତଙ୍କୁ ଦେହତ୍ୟାଗ କରିବାକୁ ପଡ଼ିବ, ତାହା ଆଜି ହେଉ ବା କାଲି । ଦୁଇଦିନ ପୂର୍ବରୁ ହେଉ ବା ପରେ । ଏହା ତ ଲୀଳାମୟଙ୍କର ଲୀଳା, ତଥାପି ମଣିଷ ମନରେ ଦୁଃଖ ଆସେ । ସେ କେବେ ଭୁଲିପାରେ ନାହିଁ । ଯେପରି ବହି ଯେତେ ପଢ଼ିଲେ ସରେ ନାହିଁ, ତା' କଥା ଲେଖିବସିଲେ ଲେଖା ବି ସରିବ ନାହିଁ । ତୁଳସୀ ଦୁଇପତ୍ରରୁ ବାସିଲା ପରି ପିଲାଦିନରୁ ତା'ର ସବୁ ଗୁଣଗୁଡ଼ିକ ସମସ୍ତଙ୍କୁ ଖୁସି ଦେଉଥିଲା ।

କାଳର କରାଳ ସ୍ରୋତରେ ସେ ସିନା ହଜିଗଲା; କିନ୍ତୁ ସେ ବଞ୍ଚିରହିଛି ଆମ ମନରେ, ହୃଦୟରେ । ଆମ ପରିବାରରେ ଏକ ଆଦର୍ଶ ହୋଇ ଆଦର୍ଶ ବ୍ୟକ୍ତିତ୍ୱର ଛାପ ଛାଡ଼ିଦେଇ ଯାଇଛି ସେ । ତା' ବିନା ସବୁ ଯେମିତି ନୀରବ, ସବୁ ପୂର୍ଣ୍ଣତା ଭିତରେ ଏକ ବିରାଟ ଶୂନ୍ୟତା । ପ୍ରତି ମୁହୂର୍ତ୍ତରେ ଶୂନ୍ୟଘରେ ଆମେ ସମସ୍ତେ ଝୁରୁଛୁ, ଝୁରୁଥିବୁ ତାକୁ, ଆଉ ତା'ର ଭଲ ପାଇବାକୁ । ଶେଷରେ ତା'ର ପ୍ରଥମ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ ତା' ଅମର ଆତ୍ମାର ସଦ୍‌ଗତି ନିମନ୍ତେ ପରମପିତାଙ୍କ ନିକଟରେ ପ୍ରାର୍ଥନା କରୁଛି ।







# ଭୁଲିହୁଏନା

**ଶ୍ରୀମତୀ ପ୍ରତିମା ଆଚାର୍ଯ୍ୟ (କର)**
ସାନ ପିଉସୀ ନାନୀ
ତିର୍ତ୍ତୋଲ, ଜଗତ୍‌ସିଂହପୁର

"ଜାତସ୍ୟ ହି ଧ୍ରୁବ ମୃତ୍ୟୁ"; ଯିଏ ଜନ୍ମ ନେଇଛି ତା'ର ମୃତ୍ୟୁ ଚିରନ୍ତନ ସତ୍ୟ । ଏହି ସତ୍ୟକୁ କିଏ ଏଡ଼ାଇ ଦେଇପାରିବ ନାହିଁ । କିନ୍ତୁ ସମୟେ ସମୟେ ଆକସ୍ମିକ ମୃତ୍ୟୁ ଅତ୍ୟନ୍ତ ଦୁଃଖଦାୟକ ।

ଭାଦ୍ରବ ମାସର ପ୍ରଥମ ଦିନ ଅଗଷ୍ଟ ୧୮ ତାରିଖ ସୋମବାର, ସେଦିନ ଥିଲା ଆମ ପରିବାରପାଇଁ ଅଶୁଭ ଦିନ । ସେଦିନ ଯେତେବେଳ ମୁଁ ଶୁଣିଲି, ରଦ୍ଧୀଶ ଦେହ ଭୀଷଣ ଖରାପ, ସେ ମେଡିକାଲ୍‌ରେ । ତା'ର ପିଉସା ଥିଲେ ଏମ୍.ଏସ୍. ଏକାଡେମୀରେ ବିଜ୍ଞାନମେଳାର ଆୟୋଜନ ଚାଲିଥାଏ । ମୁଁ ଫୋନ୍ କଲି ରଦ୍ଧୀଶ ଦେହ ଭୀଷଣ ଖରାପ, ଶୀଘ୍ର ଆସ । ତା'ପରେ ପ୍ରକୃତ କଥା ସେ ଖବର ପାଇଲେ । କିଛି ସମୟପାଇଁ ବିଜ୍ଞାନ ମେଳା ବନ୍ଦ ହୋଇଗଲା । ଚାରିଆଡ଼େ ନୀରବତା । ସେଦିନ ଥିଲା ନନ୍ଦୋତ୍ସବ । କୃଷ୍ଣଙ୍କ ପାଇଁ ସିନା ଉତ୍ସବ ହୋଇଥିଲା; କିନ୍ତୁ ତା'ପାଇଁ ସେଦିନ ଆମ ଘରେ ଦୁଃଖର ଛାୟା ସବୁଦିନପାଇଁ ରହିଗଲା । ସେହିଦିନଠାରୁ ଆମ ଘରେ ଆନନ୍ଦ ଓ ଖୁସି ସବୁଦିନ ପାଇଁ ଯେମିତି ଚାଲିଯାଇଛି ।

ଆଖିର ଲୁହ, ହୃଦୟର କୋହ ଓ ଆକୁଳତାକୁ ଚାପି ତା'ର ସେହି ଅବିନାଶୀ ଆତ୍ମାକୁ ଆମେ ପଚାରୁଛୁ – "ତୁ ସତରେ କ'ଣ ଆମ ଉପରେ ଅଭିମାନ କରି ସମସ୍ତଙ୍କୁ ପରକରି ଚାଲିଗଲୁ ?" କାଲିପରି ଲାଗୁଛି – ଯେ ଯେଉଁଦିନ ଭାଇନା ଓ ନୂଆବୋଉଙ୍କ କୋଳ ମଣ୍ଡନ କରି କୁଆଁ କୁଆଁ ରାବରେ

ସମସ୍ତଙ୍କୁ ଆନନ୍ଦିତ କରିଦେଇଥିଲା, ରାଜକୁମାର ଚେହେରା, ସୁନ୍ଦର ସ୍ୱାସ୍ଥ୍ୟ, ଗୋରା ଚିକ୍ ଚିକ୍ ଦେହ, ତା'ର ଜେଜେବାପା କେତେ ଖୁସି ଥିଲେ । ଏଇ ଦୁଃଖର ଦିନ ଆସିବା ଆଗରୁ ଜେଜେବାପା ଚାଲିଯାଇଛନ୍ତି ।

ତୋର ଜନ୍ମଠାରୁ ବିଦାୟ ଲଗ୍ନ ପର୍ଯ୍ୟନ୍ତ ତୁ ଖାଲି ଆଗକୁ ଆଗକୁ ମାଡ଼ି ଚାଲିଥିଲୁ । ତୋର ଆଚାର ବ୍ୟବହାରରେ ଶ୍ରଦ୍ଧା ଓ ଭକ୍ତିରେ ସମସ୍ତଙ୍କୁ ଯେପରି କିଣି ନେଇଥିଲୁ । ତୋର ସରଳତାର ପଟାନ୍ତର ନାହିଁ । ଏତେ ବାସ୍ତବବାଦୀ, ଏତେ ଛୋଟବେଳୁ କେମିତି ହୋଇପାରିଥିଲୁ ?

ତା'ର ସେହି ପିଲାଦିନର କଥା ଭାବିଲାବେଳକୁ ଭାବନାର ଅନ୍ତ ହେଉନି । ଛୋଟ ହୋଇଥାଏ, ମୋ ପାଖରେ ଶୋଇଥାଏ । ତା'ର ତଳ ଭଉଣୀ ଜନ୍ମ ନେଇଥାଏ, ନିଆଁ କଡ଼େଇ ପାଖରେ ଥୁଆ ହୋଇଥିଲା । ତା' ଗୋଡ଼ ବାଜିଗଲା । ସଙ୍ଗେ ସଙ୍ଗେ ବୁଢ଼ା ଆଙ୍ଗୁଠିରେ ଫୋଟକା ହୋଇଗଲା । ଛୋଟ ପିଲା କାନ୍ଦି ଉଠିଲା । ମୁଁ କହିଲି 'ଗୁନୁ' କାନ୍ଦନା । ତୋ ଜେଜେବାପା ଓ ନନା ଆସି ମୋତେ ପାଟି କରିବେ । ସେ ସଙ୍ଗେ ସଙ୍ଗେ ବନ୍ଦ ହୋଇଗଲା । ପିଲାଦିନୁ ସେ କାହା ମନରେ ଦୁଃଖ ଦିଏନି । ମାଟ୍ରିକ୍ ପରୀକ୍ଷା ଦେବାକୁ ଯାଇଥାଏ । ମୁଁ ତା' ସେଣ୍ଟରକୁ ବୁଲି ଗଲି । ସନ୍ଧ୍ୟା ସମୟ । ତା' ସାଙ୍ଗସାଥୀ କିଏ କୁଆଡ଼େ ବୁଲୁଥା'ନ୍ତି । ସେ ବହି ଖଣ୍ଡେ ଧରି ବାରଣ୍ଡାରେ ପଢୁଥାଏ । ମୁଁ କହିଲି – "ରଦ୍ଧୀଶ ! ସନ୍ଧ୍ୟା ସମୟ, ପିଲାମାନେ ବୁଲୁଛନ୍ତି, ତୁ ଏଠି ବସି ପଢୁଛୁ ।" ସେ କହିଲା – "ମୁଁ ପରୀକ୍ଷା ଦେବାକୁ ଆସିଛି । ବୁଲିବି କାହିଁକି ?" ସେ ସମୟର ମୂଲ୍ୟ ବୁଝେ । ସମୟକୁ ଯଥୋପଯୁକ୍ତ ବ୍ୟବହାର କରୁଥିଲା । ସେ ଭାରି ସ୍ୱାଭିମାନୀ ଥିଲା । ପିଲାଦିନରୁ ତାକୁ କିଏ ଖେଳିବାର ଦେଖିନି । ଅଯଥା କାହା ସଙ୍ଗେ ଗପସପ କରେନି । ସାଧାପାନ ଖଣ୍ଡେ ଖାଇବା କିଏ ତାକୁ କେବେ ଦେଖି ନ ଥିବେ । ଅଯଥା ପଇସା ଖର୍ଚ୍ଚ କରେନି କି ଅନ୍ୟର ପଇସାକୁ ମଧ୍ୟ ଅଯଥାରେ ଖର୍ଚ୍ଚ କରିବାକୁ ପସନ୍ଦ କରେନି । ସେ ପିଲାଦିନୁ ଥିଲା ଅନାସକ୍ତ, ବୟସ୍କଙ୍କ ପରି ବୁଦ୍ଧି, ବ୍ୟବହାର ଓ ଚିନ୍ତାଧାରା ।

  

ସେମିତିକା ପୁଅ ହୁଏତ ଦେଖିବାକୁ ପାଇନି କି ପାଇବି ନାହିଁ । ତାହାର ବାହାଘରର ଦେଖଣି ହେଉଥାଏ । ମୁଁ ଯାଇଥାଏ । ତା' ଶ୍ୱଶୁର ଘର ମୁଦି ଦେଲେ, ଟଙ୍କା କିଛି ଦେଲେ । ତା' ନନାଙ୍କୁ ନେଇ ମୁଦିଟି ଦେଲା । ତା' ନନା (ମୋ ଭାଇନା) କହିଲେ – "ମୋତେ କାହିଁ ଦଉଛୁ, ତୁ ପିନ୍ଧୁନୁ ।" "ନାଇଁ ନନା, ମୁଦିଟା ବଡ଼ ହେଉଛି, ବାହାରେ ରହୁଛି, ହଜିଯିବ ।" ତା' ବୋଉକୁ ଟଙ୍କା ଦେଲା । ମୁଁ ମଜାରେ କହିଲି, "ନନାଙ୍କୁ ତ ମୁଦି ଦେଲୁ, ବୋଉକୁ ଟଙ୍କା ଦେଲୁ । ଝିଅଟି ଆସିଲେ କାହାକୁ ଦେବୁ ? ତୁ ଭୁବନେଶ୍ୱର ନେଇଯିବୁ, ତୁ ଭାରି ଚାଲାକ୍ ।" "ଝିଅଟିକୁ ଆଣିଲେ ମା'କୁ ଦେବି" – ସେ କହିଲା । ସେ ମା' ଖବର ବୁଝିବ । ମଜାରେ ସିନା କଥା ହେଇଥିଲୁ, ଆଜି ପ୍ରକୃତରେ ତାହାହିଁ ହେଲା । ଆମ ପାଖରେ ତାକୁ ସବୁଦିନ ପାଇଁ ଛାଡ଼ି ଦେଇଗଲା ।

ଆଉ କ'ଣ ଲେଖିବି, ଯେତେ ଲେଖୁଛି, ଭାବୁଛି । ତା' କଥା ଭାବିବାର ଶେଷ ନାହିଁ ।

ସେ ବର୍ତ୍ତମାନ ସେହି ପରମ ପିତାଙ୍କ ଚରଣାରବିନ୍ଦରେ ଆଶ୍ରିତ । ଶେଷରେ ପରମପିତାଙ୍କ ନିକଟରେ ଏତିକି ପ୍ରାର୍ଥନା – ହେ ପ୍ରଭୁ ! ତୁମେ ମୋର ରବ୍ଧୀଶକୁ ସଂସାରକୁ ଆଣିଥିଲ, ପୁଣି ତମ ଜିନିଷ ତୁମେ ପାଖକୁ ନେଇଗଲ । ତା'ର ଆତ୍ମାକୁ ଚିରଶାନ୍ତି ଦିଅ ପ୍ରଭୁ ।

*– ବୁଢ଼ୀନ ନାନୀ*



  

# ସ୍ମୃତି...

ଶ୍ରୀମତୀ ନିରୂପମା ଆଚାର୍ଯ୍ୟ
(ସାନଖୁଡ଼ୀ)

ସେଦିନ ଥିଲା ଅଗଷ୍ଟ ୩୧ ତାରିଖ ରବିବାର ସକାଳ । ଛାତ ଉପରେ ଶ୍ରୀଶ୍ରୀଠାକୁରଙ୍କର ଭଜନ କୀର୍ତ୍ତନ ଚାଲିଥାଏ । ଅନେକ ଲୋକଙ୍କର ସମାବେଶ । ବନ୍ଧୁବାନ୍ଧବରେ ଘର ଭର୍ତ୍ତି ହୋଇଯାଇଥାଏ । ଏତେ ଜନସମାଗମ ଭିତରେ ମଧ୍ୟ ଘରଟି ଖାଁ ଖାଁ ଲାଗୁଥାଏ । ନିଛାଟିଆ ବୋଧ ହେଉଥାଏ । କାରଣ ସେ ନ ଥିଲେ, ଥିଲା ତାଙ୍କର ପ୍ରତିକୃତି ।

ମୁଁ ଯେତେବେଳେ ବୋହୂ ହୋଇ ଆସେ, ସେ ସେତେବେଳେ ଛୋଟ ପିଲା । ପଞ୍ଚମ ଶ୍ରେଣୀର ଛାତ୍ର । ସେଦିନ ତାଙ୍କର ବ୍ରତଘର ହୋଇଥାଏ । ସାତଦିନ ପର୍ଯ୍ୟନ୍ତ ଆମର ବେଦି ପୂଜାର ବିଧି ଅଛି । ପ୍ରତ୍ୟେକ ଦିନ ସେ ସଜବାଜ ହୋଇ ମୁକୁଟ ବାନ୍ଧି ବେଦିକୁ ମୋ ପାଖକୁ ଆସନ୍ତି । ସାନଖୁଡ଼ୀ ବୋଲି ମୋତେ ବହୁତ ଭଲ ପାଆନ୍ତି ।

ଧୀରେ ଧୀରେ ସମୟ ଗଡ଼ିଚାଲେ । ୧୯୯୫ ମସିହାରେ ଦଶହରା ଉତ୍ସବକୁ ଭାଇନା, ନାନୀ ଓ ରଦ୍ଧୀଶ ଆଶ୍ରମ ଯାଇଥା'ନ୍ତି । ସେଠାରେ ପୂଜ୍ୟପାଦ ଦାଦାଙ୍କ ପାଖରେ ଆମ ବଡ଼ପୁଅର ନାମକରଣ କରାନ୍ତି । ଯେଉଁଦିନ ସେମାନେ ଘରକୁ ଫେରିଲେ, ରଦ୍ଧୀଶ ଦାଣ୍ଡରୁ ଦୌଡ଼ି ଦୌଡ଼ି ମୋ ପାଖକୁ ଆସିଲେ ଆଉ ନନ୍ଦଦ୍ୟୁତି, ନନ୍ଦଦ୍ୟୁତି ବୋଲି ହସି ହସି କହୁଥା'ନ୍ତି । ସେଦିନ ସେ ବହୁତ ଖୁସି ଥାଆନ୍ତି ।

ମୋର ଦୁଇପୁଅଙ୍କୁ ସେ ବହୁତ ଭଲ ପାଆନ୍ତି । ପାଖରେ ବସାଇ ବିଭିନ୍ନ କଥା ଗପନ୍ତି । ପୂର୍ବପୁରୁଷମାନଙ୍କ ବିଷୟରେ ଗପ କରିବାକୁ ସେ ବହୁତ ଭଲ ପାଆନ୍ତି । ସାନଭାଇମାନଙ୍କୁ ବସାଇ ସେ ବିଷୟରେ ହିଁ ଆଲୋଚନା କରନ୍ତି ।

ମୋତେ ସେ ଯେତିକି ଭଲ ପାଆନ୍ତି, ସେତିକି ସମ୍ମାନ ମଧ୍ୟ କରନ୍ତି । ସମୟ ପାଇଲେ ମୋ ପାଖରେ ବସି ବହୁତ ମଜା କଥା ଗପ କରନ୍ତି । ସମୟ କାହାକୁ ଅପେକ୍ଷା କରେ ନାହିଁ । ସ୍କୁଲ୍ ପରେ ସେ କଲେଜ ଗଲେ । କଲେଜ ପଢ଼ିଲାବେଳେ ସେ ଯେତେବେଳେ ଘରକୁ ଆସନ୍ତି, ତାଙ୍କ ସାଙ୍ଗସାଥୀ ତଥା ଅଧ୍ୟାପକମାନଙ୍କ କଥା ଗପନ୍ତି । ସବୁବେଳେ ପ୍ରାୟ ମଜା ମଜା କଥା କୁହନ୍ତି । କେବେ କିନ୍ତୁ କୌଣସି ଦୁଃଖର କଥା କହି ନାହାନ୍ତି । ତାଙ୍କ ମନରେ ଯେ କିଛି ଦୁଃଖ ଥିଲା, ତାହା ମୁଁ କେବେ ବି ଅନୁଭବ କରି ନାହିଁ ।

କଲେଜ ପରେ ଚାକିରି ଜୀବନ । ତଥାପି ସେ ପାଠପଢ଼ା ଛାଡ଼ି ନ ଥିଲେ । ପଢ଼ିବା ତାଙ୍କର ଗୋଟାଏ ନିଶା । ଚାକିରି ପରେ ବିବାହ କଥା ଉଠିବାରୁ ସେ ମୋଟେ ରାଜି ହେଉ ନ ଥିଲେ । ପିଏଚ୍.ଡି. କରିବାକୁ ତାଙ୍କର ପ୍ରବଳ ଇଚ୍ଛା ଥିଲା । ଥରେ ମୋ ସହିତ କଥାବାର୍ତ୍ତା ହେଉ ହେଉ ମୁଁ ତାଙ୍କୁ ବାହାଘର କଥା କହିଲି । ବିବାହ ପରେ ମଧ୍ୟ ପାଠ ପଢ଼ିହେବ, ପାଠ ପଢ଼ାରେ ତୁମର କିଛିବି ଅସୁବିଧା ହେବ ନାହିଁ । ଏମିତି ବୁଝାଇବା ପରେ ସେ ମୋ କଥାରେ ରାଜି ହୋଇଯାଇଥିଲେ ।

ସମୟକ୍ରମେ ପିଲାଙ୍କ ପାଠପଢ଼ାପାଇଁ ମୁଁ ଆସି କଟକରେ ରୁହେ । ସେ ମଝିରେ ମଝିରେ ମୋ ପାଖକୁ କଟକ ଆସନ୍ତି । ୨୦୦୯ ମସିହାରେ ମୋର ଦେହ ଭୀଷଣ ଖରାପ ହୁଏ । ମୋର ହାର୍ଟ ପ୍ରୋବ୍ଲେମ୍ ବାହାରେ । ସେ ଶୁଣି ବହୁତ ମନଦୁଃଖ କରନ୍ତି । ମୋ ପାଖକୁ ଆସନ୍ତି । ଦେହର ଯତ୍ନ ନେବାପାଇଁ ମୋତେ ବୁଝାନ୍ତି । ଏତେ କମ୍ ବୟସରୁ ଏମିତିକା ରୋଗ, କେତେବେଳେ ଯେ କ'ଣ ଘଟିବ ବୋଲି ବ୍ୟସ୍ତ ହୋଇପଡ଼ନ୍ତି । କିନ୍ତୁ ମୁଁ ଏବେ ବି ଅଛି, ଆଉ ସେ ସମସ୍ତଙ୍କୁ ଛାଡ଼ି ଚାଲିଗଲେ ।

ତାଙ୍କର ବାହାଘର ଦିନ କଥା । ମୁଁ ଗୋଡ଼ ଲମ୍ବାଇ ବସିଥାଏ । ସେ ଦୁଇ ଗୋଡ଼ରେ ଭରାଦେଇ ମୋ କୋଡ଼ରେ ବସିଥାନ୍ତି । ମୋ କୋଡ଼ରେ ଭଲକରି ବସିବାକୁ କହିଲାରୁ, ସେ ମୋତେ କହିଲେ – "ତୁମେ ସମ୍ଭାଳିପାରିବ

ନାହିଁ ।" ମୋର ଦେହ ଭଲ ରହୁ ନ ଥିବାରୁ ସେ ମୋତେ କୌଣସି କଷ୍ଟ ଦେବାକୁ ଚାହୁଁ ନ ଥିଲେ । ମୁଁ ତାଙ୍କୁ ବହୁତ ବାଧ କଲାପରେ ସେ ମୋ କୋଡ଼ରେ ଭଲକରି ବସିଲେ ।

ତାଙ୍କର ବହୁତ ସୁନ୍ଦର ଗୋରା ତକ୍ ଚକ୍ ବଳିଷ୍ଠ ଚେହେରା । ତାଙ୍କପରି ପିଲାଟିଏ ଆମ ଆଖପାଖ ଗାଁରେ ଖୋଜିଲେ ମଧ୍ୟ ମିଳିବେ ନାହିଁ । ରୂପ ଯେମିତି, ଗୁଣ ବି ସେମିତି । ମୁଁ ତ ବେଳେବେଳେ ଭାବେ, ଆଉ କ'ଣ ଆମମାନଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଗଲା !!

ଚାକିରି ପରେ, ପ୍ରଥମେ ସେ ଭୁବନେଶ୍ୱରରେ ଭଡ଼ାଘର ନେଇ ରୁହନ୍ତି । ତା'ପରେ ତାଙ୍କୁ କ୍ୱାର୍ଟର୍ ମିଳେ । ମୁଁ ତାଙ୍କ ପାଖକୁ ଭୁବନେଶ୍ୱର ଯାଇଛି । ଯେବେ ଯାଇ ପହଞ୍ଚିଲେ ସେ ବହୁତ ଖୁସି ହୋଇଯାଆନ୍ତି । ବସ୍‌ଷ୍ଟାଣ୍ଡକୁ ଆସି ବାଇକ୍‌ରେ ଘରକୁ ନେଇ ଯାଆନ୍ତି । ଆସିବାକୁ ବାହାରିଲେ ରହିବାକୁ କୁହନ୍ତି । ସୁବିଧା ଦେଖି ପୁଣି ତାଙ୍କ ପାଖକୁ ଯିବାକୁ କୁହନ୍ତି ।

ଖାଇବା ପିଇବାରେ ତାଙ୍କର କୌଣସି ଝିନ୍‌ଝଟ୍ ନ ଥିଲା । ଗରମ ଭାତ, ହରଡ଼ଡାଲି, ଆଳୁଭର୍ତ୍ତା ତାଙ୍କର ଅତି ପ୍ରିୟ ଖାଦ୍ୟ । ସୋରିଷ ବଟା ତରକାରି ସେ ବହୁତ ଭଲ ପାଉଥିଲେ । ତଥାପି ମୁଁ ଯେତେବେଳେ ଯାହା ଖାଇବାକୁ ବାଢ଼ିଦେଲେ, ସେ ଆଗ୍ରହରେ ଖାଉଥିଲେ । ମୋ ହାତରୁ ଖାଇବାପାଇଁ ସେ ବହୁତ ଭଲ ପାଆନ୍ତି । ସେଇଥିପାଇଁ ବୋଧହୁଏ, ଶେଷଥର ପାଇଁ ମୋ ହାତରୁ ଖାଇବାଲାଗି ମୋ ପାଖକୁ ଆସିଥବଲେ । ଡାକ୍ତର ଦେଖାଇବା କେବଳ ଗୋଟାଏ ବାହାନା ଥିଲା ।

ସେଦିନ ଥିଲା ଅଗଷ୍ଟ ୧୭ ତାରିଖ ରବିବାର । ସେ କଟକ ଆସିଥିଲେ । କଟକ ବଡ଼ଡାକ୍ତରଖାନାରେ ଡାକ୍ତରଙ୍କୁ ଦେଖାଇ ଆମ ଭଡ଼ାଘରକୁ ଆସିଲେ । ସେଦିନ ମୋ ସାଙ୍ଗରେ ବହୁତ ଗପସପ ହୋଇଛନ୍ତି । ପିଏଚ୍.ଡି. ପାଇଁ ତାଙ୍କର ପ୍ରସ୍ତୁତି ଚାଲିଥାଏ । ସେ ସମ୍ବନ୍ଧରେ ମଧ୍ୟ ମୋ ସହିତ ଆଲୋଚନା କଲେ । ସେ ବହୁତ ଉଚ୍ଚାଭିଳାଷୀ ଥିଲେ । ଭବିଷ୍ୟତ ବିଷୟରେ ମଧ୍ୟ କେତେ କଥା କହିଲେ ।

ପାଞ୍ଚଟା ପୂର୍ବରୁ ତାଙ୍କର ଭୁବନେଶ୍ୱର ଫେରିଯିବାର କଥା । କିନ୍ତୁ ତାଙ୍କର ଯେପରି ଯିବାପାଇଁ ଇଚ୍ଛା ହେଉ ନ ଥାଏ । ଯିବା ଯିବା ବୋଲି କହୁଥା'ନ୍ତି; କିନ୍ତୁ ଆଉ ବାହାରୁ ନ ଥା'ନ୍ତି । ସନ୍ଧ୍ୟା ପ୍ରାର୍ଥନାର ସମୟ ହୋଇଯିବାରୁ ସମସ୍ତେ ମିଶି ପ୍ରାର୍ଥନା କଲୁ । ପ୍ରାର୍ଥନା ପରେ ତାଙ୍କ କକେଇ ଗାଁକୁ ଯିବାକୁ ବାହାରିଲେ । ତେଣୁ ସେ ଯେପରି ବାଧ୍ୟହୋଇ କକେଇଙ୍କ ସହିତ ଷ୍ଟେସନ୍ ଗଲେ, ସେଠାରୁ ଟ୍ରେନ୍‌ରେ ଭୁବନେଶ୍ୱର ଗଲେ ।

ମୁଁ କ'ଣ ଜାଣିଥିଲି ଯେ, ଏହା ହେଉଛି ମୋର ତାଙ୍କ ସହିତ ଶେଷ ସାକ୍ଷାତ୍ ! ତା' ପରଦିନ ୧୮ ତାରିଖ ସୋମବାର ସକାଳ । ମୁଁ ଖବର ପାଇଲି ତାଙ୍କ ଦେହ ଖରାପ, ଆଉ ସେ କ୍ୟାପିଟାଲ ହସ୍‌ପିଟାଲ୍‌ରେ ଭର୍ତ୍ତି ହୋଇଛନ୍ତି । ମୁଁ ସାଙ୍ଗେ ସାଙ୍ଗେ କ୍ୟାପିଟାଲ୍ ହସ୍‌ପିଟାଲ ଅଭିମୁଖେ ବାହାରିଗଲି । କିନ୍ତୁ ସେତେବେଳକୁ ସବୁକିଛି ଶେଷ ହୋଇଯାଇଥିଲା । ଆମ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ ସେ ଶ୍ରୀଶ୍ରୀଠାକୁରଙ୍କ ଚରଣକମଳରେ ଲୀନ ହୋଇଯାଇଥିଲେ ।







# ସ୍ମୃତି ସେତ ଅପାସୋରା

ଶ୍ରୀମତୀ ହୈମବତୀ ମହାପାତ୍ର
(ବଡ଼ଭଉଣୀ)
ଭୁବନେଶ୍ୱର

"ମର୍ତ୍ତମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ ।" ଏଇ ନିଷ୍ଠୁର ସତ୍ୟକୁ ମାନିନେବାକୁ ଆମେ ସମସ୍ତେ ବାଧ୍ୟ । କଥା- ଖାଲି ଏତିକି ଆଗପଛ ଆଉ ସମୟ । ଅକାଳରେ ଚାଲିଯିବାଟା ଯେ କେତେ ହୃଦୟ ବିଦାରକ, ତାହା କେବଳ ଅନୁଭବ ସିନା କରାଯାଏ, ହେଲେ ଭାଷାରେ ପରିପ୍ରକାଶ କରାଯାଇପାରେନା । ପହିଲି ଭାଦ୍ରବ ସୋମବାରର ସେଇ ସକାଳ ଛଡ଼ାଇ ନେଲା ତୋତେ ଆମମାନଙ୍କଠାରୁ ବହୁଦୂରକୁ । ଯେଉଁଠାକୁ ଗଲେ ଆଉ ଫେରିଆସିବାର ଆଶା ନ ଥାଏ । ସେଦିନର ସେ ଘଟଣା ଆଜି ବି ହୃଦୟର ସ୍ପନ୍ଦନକୁ ଦୋହଲାଇ ଦିଏ । ଏମିତି କୌଣସି ଗୋଟିଏ ଦିନ ନାହିଁ, ଯେଉଁଦିନ କି ତୋ କଥା ମନେପଡ଼ି ଆଖିରେ ଲୁହ ନ ଆସୁଛି । ନନା, ବୋଉ, ସ୍ମୃତି ଆମ ସମସ୍ତଙ୍କୁ ଛାଡ଼ି ଅଦିନରେ ଚାଲିଯିବୁ ବୋଲି ଆମେ କେବେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲୁ । ପିଲାଟି ଦିନରୁ ଗୋଟି ଗୋଟି ସବୁ କଥା ଆଜି ବି ମାନସପଟରେ ଭାସିଆସି ମନକୁ ଆନ୍ଦୋଳିତ କରି ଦେଉଛି । ରାକ୍ଷୀ ପୂର୍ଣ୍ଣିମାରେ ଚାରିଟା ରାକ୍ଷୀ ବାନ୍ଧି ଗାଁରେ ବୁଲି ଆସି କେତେ ଖୁସି ହୋଇଯାଉଥିଲୁ । କହୁଥିଲୁ – "ମୋ ହାତ ରାକ୍ଷୀରେ ପୂର୍ଣ୍ଣ ।" ଆଜି ଆଉ ସେ ହାତ ନାହିଁ ରାକ୍ଷୀ ବାନ୍ଧିବା ପାଇଁ । ଏଇ ବର୍ଷ ରାକ୍ଷୀ ପୂର୍ଣ୍ଣିମା ହିଁ ମୋର ତୋ ସଙ୍ଗରେ ଶେଷ ଦେଖା । ରାକ୍ଷୀ ବାନ୍ଧି ସାରିବା ପରେ ଭାରି ବ୍ୟସ୍ତ ହୋଇ କହୁଥିଲୁ – "ତୋତେ କ'ଣ ଗୋଟେ ଉପହାର ଦେବାକଥା ।" ମୁଁ କହିଲି – "କ'ଣ ଉପହାର ଦେବୁ ?" ତା'ର ଠିକ୍ ପୂର୍ବଦିନ ସେ ପୁରୀ ଯାଇଥିଲା । ସ୍ମୃତିକୁ କହିଲା – "ନାନୀକି ରାବିଡ଼ି ଆଣଦେଲୁ । ସେ ରାବିଡ଼ି ଖାଇବାପାଇଁ ଭଲପାଏ ।"

ବାସ୍ ସେତିକି, ଆଉ ସେ ନାନୀ ଡାକ ଶୁଣିଲିନି । ବର୍ଷା ଆସିବାର ସମ୍ଭାବନା ଥିବାରୁ ତରତର ହୋଇ ଅସିଲାବେଳେ ଚେୟାର ଉପରେ ବସି ଟେବୁଲ୍‌ରେ ମୁଣ୍ଡ ଦେଇ ଶୋଇଥାଏ । କହିଲି ଯାଉଛି ବୋଲି । ଯେମିତି ଏକଲୟରେ ମୋ ଆଡ଼େ ଚାହିଁ ରହିଥାଏ । ଯେପରି ମୋତେ ବହୁତ ଦିନ ହେଲା ଦେଖିନି । ଖାଲି ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ହେଲେ ସେଦିନର ସେ ଚାହାଁଣି ଶେଷ ଦେଖା ବୋଲି ଭାବି ନ ଥିଲି । ଏବେ ସେଇଟା ଅନୁଭବ କରୁଛି । ମୋ ପୁଅ ସେତେବେଳେ ଗର୍ଭରେ ଥାଏ । କହୁଥାଏ – "ନାନୀ ! ଆମେ ଦେଓଘର ଯାଉଛୁ ତ ଏକାବେଳେ ଦେଓଘରରୁ ନାମକରଣ କରିକି ଆସିବୁ । ଏଇ ପାଞ୍ଚ ସାତ ବର୍ଷ ହେବ ଭୁବନେଶ୍ୱରରେ ରହୁଥାଏ । ଆମ ଘରକୁ ପ୍ରାୟ ସମୟ ସମୟରେ ଆସେ ରବିବାର କି ଛୁଟିଦିନ ହେଲେ । ପହଞ୍ଚୁ ପହଞ୍ଚୁ ଆଗେ କହି ପକାଇବ – "ହେମାନାନୀ ଆଉ କ'ଣ ସବୁ ଖବର ?" ସେଇ କଥା ଆଜିବି କର୍ଣ୍ଣଗହ୍ୱରରେ ଝଙ୍କୃତ ହୋଇଯାଉଛି ।

ତା'ର ଗୋଟିଏ ଆଟାଚିରେ ସାର୍ଟିଫିକେଟ୍ ଆଉ ଦରକାରୀ କାଗଜପତ୍ର ଆମ ଶୋଇବା ଘର ଖଟତଳେ ରଖିଥିଲା । ଯେତେବେଳେ ତା'ର କ୍ୱାର୍ଟର ମିଳିଲା, ମୁଁ କହିଲି – "ତୋର ତ ବଡ଼ ବଡ଼ ରୁମ୍ ମିଳିଛି, ଥାକରେ ବି ଆଲମିରା ବ୍ୟବସ୍ଥା ଅଛି, ଏଠି ଧୂଳିମଳି ହୋଇ ଖଟତଳେ ଆଟାଚିଟା ଅଛି, ନେଉନୁ ରଖିଦେବୁ ।" ସେ କହିଲା – "ଅଛି ତ ଅଛି । ତୋ ଘରେ ଗୋଟିଏ ସନ୍ତକ ଥାଉ ।" ମୁଁ ସେ କଥାକୁ ହସିକି କହିଲି – "ସନ୍ତକ କ'ଣ ବା ! ଏଠି ଧୂଳିମଳି ହୋଇଯାଉଛି, ଆଉ ତୁ ସନ୍ତକ ବୋଲି କହୁଛୁ ।" ହେଲେ ମୁଁ କିପରି ବା ଜାଣିବି ବିଧାତାର ସେ ନିଷ୍ଠୁର ବିଧାନକୁ । ବୟସରେ ବହୁତ ସାନ ହେଲେ ମଧ୍ୟ ତା'ର କଥା ବଡ଼ଲୋକଙ୍କ କଥା ଭଳି ଥିଲା । ପାଶ୍ଚାତ୍ୟ ସଭ୍ୟତାର ଆଧୁନିକ ଚଳନି ଓ ଚିନ୍ତାଧାରା ତା' ଉପରେ କୌଣସି ପ୍ରଭାବ ପକାଇପାରି ନ ଥିଲା । ଏସବୁ ଚଳନିଠାରୁ ତା'ର ବ୍ୟବହାର, ଚଳନି, ଚରିତ୍ର ଥିଲା ବହୁ ଊର୍ଦ୍ଧ୍ୱରେ । ସବୁବେଳେ ତାକୁ କହୁଥିଲି – "କାହିଁକି ସେ ବୁଢ଼ାଙ୍କ ଭଳିଆ ହେଉଛୁ, ଟିକେ ଆଧୁନିକ ହଅ ।" ଆଧ୍ୟାତ୍ମିକ ଜ୍ଞାନଠାରୁ ଆରମ୍ଭ କରି ଶିକ୍ଷାଗତ ଯୋଗ୍ୟତାରେ ଥିଲା ତା'ର ଯଥେଷ୍ଟ ପାରଦର୍ଶିତା । ସାଙ୍ଗସାଥୀ,

ବନ୍ଧୁବାନ୍ଧବଠାରୁ ଆରମ୍ଭ କରି କଲେଜରେ ମଧ ତା'ର ବହୁତ ଆଦର ଥିଲା । "ବେଙ୍ଗ କହେ ବେଙ୍ଗୁଲୀଲୋ, ପୃଥ୍ୱୀ କ୍ଷଣକ୍ଷଣକେ ଆନ" ପରି ଆଜି ସବୁକିଛି ଓଲଟ ପାଲଟ ହୋଇଗଲା । ମୋର ଗୋଟେ ସାଙ୍ଗ ମୋତେ କହୁଥିଲା – "ତୋର ଭଲ ଭାଇଭାଉଜ । ଏହି ପାଖରେ ରହିଲେ ଭଲ ସମ୍ପର୍କ, ଯିବା ଆସିବା ଲାଗି ରହିବ ।" ହେଲେ ସବୁ ଖୁସି, ଆଶା ଭାଙ୍ଗି ଚୁର୍‌ମାର୍ ହୋଇଗଲା । ଆଶା ସବୁ ଆଶାରେ ହିଁ ରହିଗଲା । ଯେତେବେଳେ ଘରକୁ ଆସୁଥିଲା, କହୁଥିଲା ତା ଭାଣିଜୀକୁ – "ମନ୍ଦିରା ! ତୋ ବାହାଘରକୁ କ'ଣ ଦେବି କହିଲୁ ? ଦେବି ଆଉ କ'ଣ ତୋତେ ତ ମୁଁ ବାହା କରିବି ।" ଝିଅ ମୋର ହସି ହସି ଗଡ଼ିଯାଉଥିଲା । ଝିଅ କହୁଛି ମାମୁଁ ତ ଚାଲିଗଲା — ପ୍ରଥମାଷ୍ଟମୀକୁ ମୋ ପାଇଁ କିଏ ଆଉ ଡ୍ରେସ୍ କିଣିଦେବ କହି କାନ୍ଦିଲା । ମୁଁ ତାକୁ ବୁଝାଇ କହିଲି – "ଅଜା ଦେବେ ।" ତାକୁ ସିନା କହି ବହୁ କଷ୍ଟରେ ବୁଝାଇ ଦେଲି, ହେଲେ ନିଜ ମନକୁ ବୁଝାଇ ପାରିଲିନି । ଆଜି ବି ଆଖିକି ବିଶ୍ୱାସ କରିହେଉନି । ମନ ମାନୁନି, ସତରେ କ'ଣ ତୁ କେବେବି ଆମ ପାଖକୁ ଫେରିଆସିବୁନି ? ସେ ଯେଉଁଠି ଥାଉନା କାହିଁକି, ଯେତେ ଦୂରରେ ଥାଉନା କାହିଁକି, ଆମ ହୃଦୟରୁ କେବେ ବି ତା'ର ସ୍ମୃତି ଲିଭିଯିବନି । ମୋତେ ଯେପରି ଅନୁଭବ ହେଉଛି, ସେ ଆମରି ଆଖପାଖରେ ହିଁ ଅଛି । ସାଗର କୂଳରେ ବସି ଶାମୁକା ସାଉଁଟିଲା ପରି ତା'ର ସ୍ମୃତିକୁ ବଞ୍ଚିଥିବା ପର୍ଯ୍ୟନ୍ତ ସାଉଁଟୁଥିବୁ । ପରମ ପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କ ନିକଟରେ ଏତିକି ଐକାନ୍ତିକ ବିନମ୍ର ପ୍ରାର୍ଥନା, ସେ ତା'ର ଆତ୍ମାକୁ ସଦ୍‌ଗତି ତଥା ଉର୍ଦ୍ଧ୍ୱଜୀବନ ଦିଅନ୍ତୁ । ତାଙ୍କରି ପାଖରେ ତାଙ୍କରି ମଣିଷ କରି ରଖନ୍ତୁ ।

"ଆକାଶେ ଚନ୍ଦ୍ରମା ଝୁରେ ତା' ନୀଳ କଇଁକୁ,
ଚାତକ ଯେ ଝୁରୁଥାଏ ଘନ ବାରିଦକୁ ।
ନଦୀ ଝୁରେ ତଟିନୀରେ କୂଳ ଲଙ୍ଘିବାକୁ,
ପ୍ରଦୀପ ଝୁରଇ ସଦା ଘନ ଅନ୍ଧାରକୁ ।
ଭ୍ରମର ଝୁରଇ କଳିର ମଧୁ ଚୁମିବାକୁ,
ମୁଁ ଝୁରେ ଅତୀତର ବିଗତ ସ୍ମୃତିକୁ ।"







# ମୋ ଭାଇନା

ଶ୍ରୀମତୀ ମଧୁମିତା ଆଚାର୍ଯ୍ୟ (ପଣ୍ଡା)
(ସାନଭଉଣୀ)

ଦୁନିଆରେ ଜନ୍ମ ଓ ମୃତ୍ୟୁ ଚିରନ୍ତନ ସତ୍ୟ । ଜନ୍ମ ହେଲେ ଆମେ ଯେତିକି ଖୁସି ହେଉ, ମୃତୁରେ ସେତିକି ଦୁଃଖ କରୁ । ମଣିଷ ଜନ୍ମ ହୋଇଛି ମାନେ ଦିନେନା ଦିନେ ନିଶ୍ଚୟ ମୃତ୍ୟୁବରଣ କରିବ, ଏହା ସମସ୍ତେ ଜାଣନ୍ତି । କିନ୍ତୁ ଅସମୟରେ ମୃତ୍ୟୁ ଆମକୁ ବେଶି ଦୁଃଖ ଦିଏ ।

ମୋ ଭାଇନା ମୋଠାରୁ ବୟସରେ ଦେଢ଼ବର୍ଷ ବଡ଼; କିନ୍ତୁ ଆମେ ଦୁଇଜଣ ଏକା ସ୍କୁଲ୍‌ରେ ପାଠ ପଢୁ ଓ ଏକାଠି ଟ୍ୟୁସନ୍ ହେଉ, ଏକାସାଙ୍ଗରେ ଟ୍ୟୁସନ ଯାଉ ଓ ସ୍କୁଲ୍ ଯାଉ; କିନ୍ତୁ ସେ ମୋଠାରୁ ସବୁଥିରେ ଆଗୁଆ । ତା' ସାଙ୍ଗରେ ମୁଁ ସମାନ ହୋଇପାରିବି ନାହିଁ । ଆମ ଘରେ ମୁଁ ଶୁଣିଛି, ମୋ ନନା କହନ୍ତି – "ମୁଁ ଯେତେବେଳେ ଜନ୍ମ ହେଲି, ମୋ ଜେଜେବାପା ବହୁତ ଖୁସି ହେଲେ ଯେ, ସେ ଭାଇନା ଡାକ ପାଇବ ।" ମୋ ପାଇଁ କିନ୍ତୁ ସେଇ ଭାଇନା ଡାକ ଅଳ୍ପଦିନପାଇଁ ଥିଲା । ମୁଁ ତା'ର ସାନ ଭଉଣୀ ହିସାବରେ ବହୁତ ସ୍ନେହ ଭଲପାଇବା ମୋତେ ସେ ଦେଇଯାଇଛି । ଘରର ସମସ୍ତଙ୍କଠାରୁ ମୋ ଉପରେ ତା'ର ଗଭୀର ବିଶ୍ୱାସ । ଯେଉଁ ଦାୟିତ୍ୱ ଜିନିଷ ଆଣେ, ସେ ମୋତେ ରଖିବାପାଇଁ ଦିଏ ଏବଂ ତା'ର ସିକ୍ରେଟ୍ କଥା ମୋତେ କୁହେ । ତା' ବାହାଘର ସମୟରେ ତା' ସହିତ ମୋର ଦେଖା ହୋଇଥିଲା । ସେହି ସୁନ୍ଦର ମୁହଁ ସବୁବେଳେ ଆଖି ଆଗରେ ନାଚୁଛି । ସେ ହଠାତ୍ ଏମିତି ଚାଲିଗଲା ଯେ, ମୁଁ ଶେଷଥରପାଇଁ ଦେଖିପାରିଲି ନାହିଁ । କେହି କେବେ ଆଶା କରି ନ ଥିଲେ ଯେ, ସେ ଏମିତି ଚାଲିଯିବ । ଭାଇ ଭଉଣୀ ସମ୍ପର୍କ ଅତ୍ୟନ୍ତ ନିବିଡ଼ । ପ୍ରତ୍ୟେକ ଭଉଣୀର ସୁଖରେ ଦୁଃଖରେ ଭାଇ ଆବଶ୍ୟକ । ଆମ ପିଲାମାନଙ୍କର ମଧ୍ୟ ମାମୁ ଦରକାର । ଆମ ଓଡ଼ିଆରେ କହନ୍ତି – "ନାହିଁ ମାମୁଠାରୁ କଣା ମାମୁ ଭଲ ।" କିନ୍ତୁ ମାମୁ କେମିତି





କ'ଣ ଆମ ପିଲା ଦେଖିପାରିଲେ ନାହିଁ; ଯାହା ଆମଠାରୁ ତାଙ୍କ ମାମୁ ବିଷୟରେ ଶୁଣିବେ । ବଞ୍ଚିଥିବା ପର୍ଯ୍ୟନ୍ତ ପାଦେ ପାଦେ ଆମେ ତା'ର ସବୁ ସ୍ମୃତିକୁ ମନେପକାଇ ଝୁରୁଥିବୁ; କିନ୍ତୁ ଆଉ ଫେରିପାଇବୁନି । ଏହା ସତ୍ୟ ଯେ, ଯେଉଁଠାକୁ ଗଲେ ମଣିଷ କେବେ ଫେରି ଆସିପାରେ ନାହିଁ । ଭଗବାନ୍‌ଙ୍କର ଇଚ୍ଛା କ'ଣ ସେକଥା ଆମେ ଜାଣିନୁ; କିନ୍ତୁ କାହିଁକି ଏତେ ଶୀଘ୍ର ତାକୁ ନେଇଗଲେ, ସେକଥା କେହି ଜାଣନ୍ତିନି, ଆମେ ମଣିଷ, ଆମେ କେମିତି ବା ବୁଝିପାରିବୁ !

ସେ କେତେବେଳେ ରାଗିବା, କାହାକୁ ପାଟି କରିବା ବା କୌଣସି ଖରାପ ଅଭ୍ୟାସ ତା'ର ନ ଥିଲା । ତାକୁ ଯଦି ସ୍କୁଲ୍‌ରେ ସାର୍ କିମ୍ବା ଘରେ ନନା କେବେ ପାଟି କରନ୍ତି, ସେ କାନ୍ଦିପକାଏ । ସେ କାହା ଦୁଃଖ ଦେଖିଲେ କାନ୍ଦିପକାଏ ଓ ଭାଙ୍ଗିପଡ଼େ । ସେ ମୋର ଏକମାତ୍ର ଭାଇ, ମୁଁ ତାକୁ ବହୁତ ଭଲ ପାଏ, ତା' ଆଖିରେ ଲୁହ ଦେଖିଲେ ମୁଁ ସହିପାରେନି । ସ୍କୁଲ୍‌ରେ ପାଠପଢ଼ାଠାରୁ କବିତା ଆବୃତ୍ତି ଯାହା କିଛି, ସେ ମୋତେ ସାହାଯ୍ୟ କରେ ଏବଂ ମୁଁ ତାଠାରୁ ବୁଝିନିଏ । ଆଜି କିନ୍ତୁ ତା'ଠାରୁ ସବୁକଥା ବୁଝିବା ମୋର ଅଧା ରହିଗଲା । ସେ ଭଲ ପାଠ ପଢ଼େ, ଭଲ ଲେଖାଲେଖି କରେ । ପଢ଼ିବା ଲେଖିବାରେ ତା'ର ଝୁଙ୍କ୍ । ମୁଁ କେବେ କିଛି ଲେଖିନି । ମୋତେ ଲେଖି ଆସେ ନାହିଁ; କିନ୍ତୁ ମୋ ଭାଇନାପାଇଁ ପଦେ ଲେଖିବାପାଇଁ ଇଚ୍ଛା କଲି । ଭାଇ ଭଉଣୀ କଥା ତ ବହୁତ, ସବୁ ଲେଖିବା ସମ୍ଭବ ନୁହେଁ । ଶେଷରେ ପରମପିତାଙ୍କ ପାଖରେ ମୋର ଏତିକି ପ୍ରାର୍ଥନା – ତା'ର ଆତ୍ମା ସଦ୍‌ଗତି ଲାଭ କରୁ ଏବଂ ସେ ତା'ର ଇଚ୍ଛା ମୁତାବକ ଶୀଘ୍ର ପୁନର୍ଜନ୍ମ ଲାଭ କରୁ ।

ସମ୍ପର୍କ ନୁହଁଇ          କାଚର କଣ୍ଢେଇ
ପଡ଼ିଗଲେ ଭାଙ୍ଗିଯିବ,
ସମ୍ପର୍କ ନୁହଁଇ          ଶୁଖିଲା ପତର
ପବନରେ ଉଡ଼ିଯିବ ।
ସମ୍ପର୍କ ଅଟଇ          ଅମୂଲ୍ୟ ସମ୍ପଦ
ଚିରଦିନ ରହିଥିବ ॥

•





# ମୋ ଭାଇନାଙ୍କ କଥା

ଶ୍ରୀମତୀ ମନୀଷା ଆଚାର୍ଯ୍ୟ (ମିଶ୍ର)
(ସବା ସାନଭଉଣୀ)

ଯେକୌଣସି ବିଷୟରେ ଲେଖିବାକୁ ଗଲେ କିମ୍ବା ପ୍ରତିଯୋଗିତାରେ ଭାଗନେବାକୁ ଗଲେ ଆଗେ ମୋ ଭାଇନାକୁ ପଚାରେ । ଭାଇନା ବିଜ୍ଞାନ ଛାତ୍ର ଥିଲେ ମଧ ଓଡ଼ିଆ ଭାଷା ଓ ସାହିତ୍ୟରେ ତା'ର ଅଗାଧ ଜ୍ଞାନ ଥିଲା । ଆଜି ତା' ବିଷୟରେ କ'ଣ ଲେଖିବି ? ଆଜି ଜନ୍ମରୁ ବଡ଼ ହେବା ପର୍ଯ୍ୟନ୍ତ ବିତେଇଥିବା ମୁହୂର୍ତ୍ତଗୁଡ଼ିକ ଅନୁଭବ କରି ଓ ମନେପକାଇ ଆଖିରୁ ଲୁହ ବୋହିଯାଉଛି । ହେଲେ ସବୁ ଲେଖିବା ସହଜ ନୁହେଁ । ସିଏ ଥିଲା ଉଚ୍ଚମନା ଏବଂ ସରଳ ଜୀବନ ଯାପନ କରେ । କୌଣସି ଦିନ ସିଏ ଯାହାହେଲେ ଯୁଆଡୁ ଗୋଟେ ପିନ୍ଧି ଦେଉଥିଲା ଏବଂ ମସିଆ ହେଲେ କହେ – "ମମା ! ଡ୍ରେସ୍‌ଗୁଡ଼ିକ ସଫା କରିଦେଉନୁ !" ଯେତେବେଳେ ଘରକୁ ଆସେ, ଆମେ ସମସ୍ତେ ଭାଇଭଉଣୀ ଗପସପ ହେଉ ହେଉ ବାରଟା ଏବଂ ଗୋଟାଏ ରାତି ହୋଇଯାଉଥିଲା । ମୁଁ ଯେତେବେଳେ ଭୁବନେଶ୍ୱର ଯାଏ, ସେ ମୋତେ କହେ – "ଭୁବନେଶ୍ୱରରେ ବାଟ ଚିହ୍ନି ଦେଖ ଏବଂ ଏକା ଏକା ଆସିବାକୁ ଚେଷ୍ଟା କର ।" ଭୁବନେଶ୍ୱରରେ ଥିଲାବେଳେ କହେ – "ମୋଠାରୁ ରନ୍ଧା ଶିଖ । ତୁତ ଭଲ ଟେଷ୍ଟଫୁଲ୍ ତରକାରି କରିପାରୁନୁ ! ଉଠ୍ ।" ମୁଁ କେମିତି ରୋଷେଇ କରିବି, ସବୁବେଳେ କହେ । ଛୁଟିଦିନ ଯେମିତି ହେବ, କହିବ ଚାଲ ମୋ ସାଙ୍ଗରେ ବୁଲିଯିବୁ । ଘରକୁ ଆସିଲେ କହିବ, ମୋ ପାଖରେ ପଇସା ପତ୍ର ନାହିଁ । ଘରୁ ଯେତେବେଳ ବାହାରେ ଯିବାକୁ, ନନା ପଚାରିବେ – "ପଇସା ନେବୁ ଖର୍ଚ୍ଚ କ'ଣ କରିବୁ ?" କହେ – "ନନା ! ମୋ ପାଖରେ ଅଛି ।" କେତେବେଳେ ମାଗେ ନାହିଁ – "ନନା ! ମୋତେ ଏତେ ଟଙ୍କା ଦିଅ ବୋଲି ।" ଆଜିକାଲି ପିଲା ତ, ବାପା ମା'ଙ୍କ ପାଖରେ ଦାବି, ମୋତେ ଏତିକି ଟଙ୍କା ଦିଅ ବୋଲି । ସେ କୌଣସି ଦିନ ଟଙ୍କା ଦିଅ ବୋଲି କୁହେ ନାହିଁ । ତା'ର କୌଣସି ଅଯଥା ଖର୍ଚ୍ଚ ନ ଥାଏ । ମୋର ଯେତେବେଳେ ହାତ ଭାଙ୍ଗିଯାଇଥିଲା, ମୋତେ ଡାକ୍ତରଖାନା ନେଇ କେମିତି କ'ଣ ଭଲ ହେବ, ସିଏ





ବ୍ୟସ୍ତ ହୋଇପଡ଼ିଥାଏ । ନିଜେ ଡାକ୍ତରଙ୍କ ପାଖକୁ ଯାଇ ଡାକ୍ତରଙ୍କ ସାଙ୍ଗରେ କଥାବାର୍ତ୍ତା କରି କେମିତି କ'ଣ ଆଡ୍‌ମିସନ ହେବ, ନିଜେ ରହି ସବୁକଥା ବୁଝୁଥିଲା । ତା'ର ସେଇ ଡାକ୍ତରଖାନାରେ ସାଙ୍ଗ ଥିଲା । କହୁଥିଲା – "ମୋ ଭଉଣୀ ଯାଉଛି ଓ.ଟି. ଭିତରକୁ । ତା'ର ଦେଖାଶୁଣା କରୁଥିବୁ ।" ଯେତେବେଳେ ନୂଆ ଚାକିରି ହେଲା, ଆମେ ଅର୍ଥାତ୍ ଗୁଣ୍ଡିଚି ନାନୀ ଓ ମୁଁ ଦୁହେଁ କହିଲୁ – "ଆମପାଇଁ ଡ୍ରେସ୍ କରିବୁନି ? ନୂଆ ଚାକିରି ହେଲା ।" କହିବ – "ଝିଅ ପିଲାଙ୍କ ଜିନିଷ ମୋତେ କିଣି ଆସିବନି । ମୁଁ ପଇସା ଦେଇଦେଉଛି, ତୁମେ ତୁମର ଡ୍ରେସ୍ କିଣିବ ।" କେଉଁଦିନ ମୁହଁରେ ଟିକେ ପାଉଡର ଲଗେଇବା ଆମେ କେହି ଦେଖି ନାହୁଁ, ଯେଉଁ ଦିନ ତା' ବାହାଘର ଦେଖିବାକୁ ଆସିଲେ, ମୁଁ କହିଲି – "ପାଉଡର ଲଗାଉନୁ !" ସିଏ କହେ – "ଜୀବନରେ ପାଉଡ଼ର ଲଗେଇନି । ଏବେ କାହିଁକି ଲଗେଇବି ।" ସିଏ ତ ଦେଖିବାକୁ ଗୋରା, ପାଉଡ଼ର କ'ଣ ତାକୁ କିବା ସୁନ୍ଦର କରିବ ! ତା'ର ପାଠପଢ଼ା ପ୍ରତି ଏତେ ଝୁଙ୍କ୍ ଥିଲା ଯେ, ସବୁବେଳେ ଉପରୁ ଉପରକୁ ଉଠିବାକୁ ମନ । ସବୁବେଳେ କେତେବେଳେ ତା'ର ସାଙ୍ଗସାଥୀଠାରୁ ବୟସ୍କ ଲୋକଙ୍କ ସାଙ୍ଗରେ ସାଙ୍ଗ, ତା'ର ପାଠପଢ଼ାଇବା ଶୈଳୀ ସମସ୍ତଙ୍କଠାରୁ ଭିନ୍ନ ଏବଂ ବିଭିନ୍ନ ପ୍ରକାର ଅଧ୍ୟାପକଙ୍କ ସାଙ୍ଗରେ ମିଶେ । ତାଙ୍କ ଘରକୁ ଯାଇ କଥାବାର୍ତ୍ତା କରେ ଏବଂ ସେମାନେ ବହୁତ ଭଲ ପାଆନ୍ତି ଭାଇନାଙ୍କୁ । ସବୁବେଳେ ରାତି ବାରଟା ଗୋଟାଏ ପର୍ଯ୍ୟନ୍ତ ତା'ର ପଢ଼ାପଢ଼ି ଏବଂ ବହିପତ୍ର ଖେଳେଇକି ପକେଇଥିବ । ମୁଁ କହେ – "ସାଇଜ୍ କରିଦେବି ?" କହେ – "ମୋର ମୁଁ ସାଇଜ୍ କରିବି ।" ମୁଁ ଗୋଟିଏ କ'ଣ ଖୋଜିବାକୁ ଯାଉଥିବି, କାଳେ ପାଉ ନ ଥିବି ଏବଂ ବିଭିନ୍ନ ପ୍ରକାର ପତ୍ରପତ୍ରିକା ଲେଖାଲେଖି କରିବାକୁ ଦିଏ । ପରମପୂଜ୍ୟପାଦ ଶ୍ରୀଶ୍ରୀଦାଦା ମଧ୍ୟ ଆଶୀର୍ବାଦ କରିଥିଲେ 'ଲାଇଗେଟ୍' ପତ୍ରିକାକୁ ଲେଖା ପଠେଇବାକୁ । ସିଏ ମଧ୍ୟ କେତେକ ଲେଖା ପଠେଇଥିଲା । ଆମ ଚାରିଜଣଙ୍କଠାରୁ ତା'ର ବହୁ ବହୁ ଜ୍ଞାନ ଥିଲା ଏବଂ ଭିନ୍ନ ଥିଲା ସେ । ସେ ଭଲ ଆତ୍ମା ଥିଲା ବୋଲି ଆଜିକାଲି ଦୁନିଆରେ ଯାହାସବୁ ଚାଲିଛି, ସହ୍ୟ କରିପାରୁ ନ ଥିଲା ବୋଲି ଭଗବାନ୍ ତାଙ୍କ ପାଖକୁ ତାକୁ ନେଇଗଲେ । ଆଉ ସାରାଜୀବନ ତା'ରି ସ୍ମୃତିସବୁକୁ ଝୁରି ହେବାପାଇଁ ଆମକୁ ରଖିଛନ୍ତି ।







# ଭାଇନାଙ୍କ ସ୍ମରଣେ

**ପୁଣ୍ୟତୋୟା କର (ମାନୁଆ)**
(ପିଉସୀ ଝିଅ ଭଉଣୀ)
ତିର୍ତ୍ତୋଲ, ଜଗତ୍‌ସିଂହପୁର

ଆଜି ମୋର ଅତିପ୍ରିୟ ବଡ଼ଭାଇନାଙ୍କ ବିଷୟରେ ଭାବିଲାବେଳକୁ କେବଳ ଦୁଃଖ ନୁହେଁ ନିହାତି ଆଶାଶୂନ୍ୟ ମଧ୍ୟ ଲାଗୁଛି । ତାଙ୍କର ଅନାବିଳ ସ୍ନେହ, ମମତା, ଶ୍ରଦ୍ଧା ଭୁଲିହେବ ନାହିଁ । ଭାଇନା ! ତୁମେ ଇହଲୀଳା ସମ୍ୱରଣ କରି ଚାଲିଗଲା ପରେ ଏଠି ଅନେକ ଯନ୍ତ୍ରଣା । ଅତୀତର ସବୁକଥା ଗୋଟି ଗୋଟି ହୋଇ ମନେପଡ଼େ ।

ଅଗଷ୍ଟ ମାସ ୧୮ ତାରିଖ ସେହି ଅଶୁଭ ସକାଳଟାରେ ଯେତେବେଳେ ମୁଁ ସକାଳୁ ଏ ଦାରୁଣ ସମ୍ୱାଦ ଟ୍ୟୁସନ୍‌ରୁ ଆସି ଶୁଣିଲି, ଅବାକ୍ ହୋଇଗଲି । ତୁମେ କହିଥିଲ ୧୭ ତାରିଖ ଦିନ ମୋତେ ପଢ଼ାଇବାକୁ ଆସିଥା'ନ୍ତ; କିନ୍ତୁ ସେଦିନ ଜନ୍ମାଷ୍ଟମୀ ଥିବାରୁ ମୁଁ ମନା କରିଥିଲି । ହୁଏତ ମୁଁ ଶେଷ ମୁହୂର୍ତ୍ତରେ କଥା ପଦିଏ ହୋଇପାରିଥା'ନ୍ତି ।

ମୋର ନମସ୍ୟ ଭାଇନା ଯିଏକି ମୋତେ ପାଠ ପଢ଼ିବାକୁ ବହୁତ ଉତ୍ସାହିତ କରନ୍ତି । ସେ କହୁଥା'ନ୍ତି – "ମାନୁ ! ତୁ ମୋଟେ ଚିନ୍ତା କରିବୁ ନାହିଁ । ମୁଁ ତୋତେ ପାଠ ପଢ଼େଇବି । ଯେଉଁଠି ବୁଝି ନ ପାରିବୁ, ମୋତେ ପଚାରିବୁ । ତୁ ଅନର୍ସରେ ଭଲ ମାର୍କ ରଖିବୁ ।" ବେଳେବେଳେ ତିର୍ତ୍ତୋଲ ଆସି ମୋତେ ପଢ଼ାନ୍ତି । କଲେଜରେ ଯେତେ ସାର୍ ବୁଝାଇଲେ ମଧ୍ୟ ତାଙ୍କ ପଢ଼ାଇବା ଶୈଳୀରେ ମୁଁ ସହଜରେ ବୁଝିପାରିଥାଏ ।





ଯେତେବେଳେ ସନ୍ଧ୍ୟାରେ ଆମେ ସବୁ ଭାଇଭଉଣୀ ଏକାଠି ବସିଥାଉ, ଭାଇନା ଖାଲି ପାଠ ବିଷୟରେ ଆଲୋଚନା କରନ୍ତି । ମୋତେ ବହୁତ ଡର ଲାଗେ, ଯେତେବେଳେ ଭାଇନା ପାଠ ପଚାରନ୍ତି । ମୋତେ ନ ଆସିବାରୁ ଭାଇନା ବାପାଙ୍କୁ କହିଦିଅନ୍ତି – "ପିଇସା ! ମାନୁ ଆଉ ପାଠ ପଢୁନି ।"

ସେଦିନ କଥା ମନେପଡୁଛି । ମୁଁ ସେତେବେଳେ +୨ ପଢୁଥାଏ, ମାମୁଘର ଯାଇଥାଏ । ମୋତେ କେତୋଟି ପ୍ରଶ୍ନ ପଚାରିଥିଲେ । ମୁଁ ଉତ୍ତର ଦେଇପାରିଲିନି । ଘରେ ଆଈ, ମାଈଁ, ନାନୀ, ସାନଭାଇମାନଙ୍କ ଆଗରେ ଗାଳି କରିଥିବାରୁ ମୁଁ ବହୁତ କାନ୍ଦିଥିଲି । ଆଉ ତା' ପରେ ଭାଇନା ମୋତେ ବହୁତ ବୁଝାଇଥିଲେ । ଆଉ ମନଦେଇ ପଢ଼ିବାକୁ କହିଥିଲେ । ମୋତେ ଅଯଥା ଗପସପ କରିବାକୁ ବାରଣ କରିଥିଲେ ।

ଭାଇନା ! ତୁମେ ମୋ ପାଇଁ ଯେଉଁ ପ୍ରଚେଷ୍ଟା କରିଛ, ମୁଁ ତୁମ ପାଖରେ ଚିର ଋଣୀ ହୋଇ ରହିଗଲି । ଶେଷରେ ସେହି ମହାନ୍ ଆତ୍ମାଙ୍କୁ ମୋର ଶତକୋଟି ପ୍ରଣାମ ।



  

# ମୋ ସାନଭାଇ - ମୋ ପ୍ରାଣ

**ଶ୍ରୀମତୀ ଚମ୍ପା ଇତିଶ୍ରୀ ଆଚାର୍ଯ୍ୟ (ପଣ୍ଡା)**
**(ଭଉଣୀ)**

ମୋ ନନା ତାକୁ ସ୍ନେହରେ 'ବାପୁ' ବୋଲି ଡାକନ୍ତି । ମୁଁ ତାକୁ ବେଳେ ବେଳେ 'ବାପୁ', ବେଳେ ବେଳେ 'ରବୀଶ' ବୋଲି ଡାକେ । ମୋଠାରୁ ସେ ସାଢ଼େ ତିନିବର୍ଷ ସାନ । ଆମ ଚାରି ଭଉଣୀରେ ସେ ଏକମାତ୍ର ଭାଇ । ଦୁଇଭଉଣୀ ଉପରେ, ଦୁଇ ଭଉଣୀ ତଳେ, ମଝିରେ ସେ । ତା'ର ନାମକରଣ ବେଳକୁ ମୋ ନନାଙ୍କ ଆଈ ଆମ ଘରକୁ ଆସିଥିଲେ । ନନା ଓ ବୋଉଙ୍କୁ ବାରମ୍ବାର କହୁଥିବାର ମୁଁ ଶୁଣିଛି – ଏ ଝିଅ ତୁମର ପୁଅ କଢ଼େଇ, ତାକୁ ମାରିବନି, ଗେହ୍ଲା କରିବ । କିନ୍ତୁ ନନା ଆମର ଆମକୁ କଠୋର ଶୃଙ୍ଖଳାରେ ବଢ଼ାଇଛନ୍ତି, ମାଡ଼ ବି ଦିଅନ୍ତି । କେବେ ରବୀଶକୁ ମାଡ଼ ମାରିବାର ମୁଁ ଦେଖି ନାହିଁ । ପିଲାଦିନରୁ ସେ ବିନୟୀ, ଭଦ୍ର, ପାଠପଢ଼ାରେ ମନ, କେବେ ବି ତାକୁ ଦୁଷ୍ଟ ହେବାର କେହି ଦେଖି ନାହାନ୍ତି । ହସିବ ମୁରୁକି ମୁରୁକି, କାନ୍ଦିବ କଇଁ କଇଁ ହୋଇ ଲୁହ ଆଖିରୁ ବାହାରିଯିବ । ଭାରି ନୀତିନିଷ୍ଠ । ମୁଁ ବାହାର ସାଙ୍ଗପିଲାଙ୍କ ସହ ସମୟ ନଷ୍ଟ କରିବାକୁ ସେ ପସନ୍ଦ କରେନି; ବରଂ ମୋ ଉପରେ ବିରକ୍ତ ହୁଏ । ଆମ ସାଙ୍ଗରେ ହସ-ଖୁସୀ, ଗପସପ ସବୁ କରେ; ମାତ୍ର ଆମେ ବଡ଼ ଜୋର୍‌ରେ ହସିଲେ ବିରକ୍ତ ହୁଏ । ଆମେ ରାହାମାରେ ଥିବାବେଳେ ନନା ଗୋଟିଏ ଟି.ଭି. ଆଣିଥିଲେ ମାଆ (grand-mother) ଦେଖିବ ବୋଲି । ମୁଁ ପ୍ରାୟ ଟି.ଭି. ଦେଖେ । ତା'ର ପଢ଼ାପଢ଼ିରେ ବ୍ୟାଘାତ ହେବ ବୋଲି ବିରକ୍ତ ହୋଇ ଟି.ଭି.ସେଟ୍‌କୁ ବାନ୍ଧି ଘରର ତାଜା ଉପରେ ଥୋଇଦିଏ । ସେ ନନାଙ୍କ ସାଙ୍ଗରେ ବହୁ ସ୍ଥାନକୁ ଯାଇଛି । ନନାଙ୍କ ସହିତ ପାଠପଢ଼ା ବିଷୟ ସହ ଅନ୍ୟାନ୍ୟ ବହୁ କଥା ଆଲୋଚନା କରେ, ମୁଁ ସେସବୁ ସେତେବେଳେ

  

ବୁଝିପାରୁ ନ ଥିଲି ବା ତାହାର ଗୁରୁତ୍ୱ ଅନୁଭବ କରି ନ ଥିଲି । ଆଜି ବୁଝୁଛି – ଛୋଟବେଳୁ କେତେ କେତେ ବଡ଼ କଥାରେ ତା'ର ମନ ଥିଲା ।

ମୋ ମୁଣ୍ଡ ଚୁଟିର ସମସ୍ୟା ଥିଲା । ମୋ ବିଭାଘର ହେବ କି ନା - ନନା ଚିନ୍ତିତ ଥିଲେ । ନନା ଭାବୁଥିଲେ - ଯଦି ଭଲ ପ୍ରସ୍ତାବ ନ ଜୁଟେ, ତେବେ ମୁଁ ବରଂ ଅବିବାହିତ ରହିଯିବି । ମାତ୍ର ସେ ସବୁବେଳେ ପ୍ରାୟ ନନାଙ୍କୁ କୁହେ – "ଇତିନା ନାନୀ ବାହାଘର କରାଇ ଦିଅ । ଅସୁବିଧା ହେଲେ ବରଂ ମୁଁ ଆର୍ଥିକ ସାହାଯ୍ୟ ସବୁଦିନେ କରିବି ।" ମୋ ବିଭାଘରର ବର୍ଷକ ପରେ ମୋର ପୁଅଟିଏ ହେଲା । ଖୁସିରେ ସେ ତା'ର ନାମକରଣ କରାଇ ଆଣିଥିଲା । ଏହାର କିଛିଦିନ ପରେ ମୋର ଆପେଣ୍ଡିସାଇଟ୍ ବାହାରେ ଏବଂ ଭୀଷଣ ଯନ୍ତ୍ରଣା ହୁଏ ଓ ପେଟ ଭିତରେ ଫାଟି ଯାଏ । ସେ ଆସି ଭୁବନେଶ୍ୱର ନେଇଯାଏ ଓ ସମ୍ ହସ୍‌ପିଟାଲରେ ମୋର ଅପରେସନ୍ ହୁଏ ଏବଂ ଆସ୍ତେ ଆସ୍ତେ ସମ୍ପୂର୍ଣ୍ଣ ସୁସ୍ଥ ହୁଏ । ତା'ରି କ୍ୱାର୍ଟର୍ସରେ ମୋ ପୁଅକୁ ରଖି ମୋ ସାନ ଦୁଇଭଉଣୀ ରୁହନ୍ତି । ମୋ ଶାଶୁ ହସ୍‌ପିଟାଲ୍‌ରେ ମୋ ପାଖରେ ଥାଆନ୍ତି । ସେ ସବୁଦିନେ ଦୁଇବେଳା ଯାଇ ମୋ କଥା, ମୋ ଶାଶୁଙ୍କ ଖାଇବା କଥା ବୁଝେ ଓ ସମସ୍ତ ଟଙ୍କା ସେ ଖର୍ଚ୍ଚ କରେ । କ୍ୱାର୍ଟର୍ସରୁ ଖାଇବା ନେଇକରି ଯାଏ । ହସ୍‌ପିଟାଲ୍‌ରୁ ଆସିବା ପରେ ଓ ଘରକୁ ଆସିବା ପୂର୍ବରୁ ମୋ ଶାଶୁ ତାକୁ କିଛି ଟଙ୍କା ଦିଅନ୍ତି । ସେ ରଖିବାକୁ ନାହିଁ ନାହିଁ କରୁଥିଲା; କିନ୍ତୁ ମୋ ଶାଶୁ ଜବରଦସ୍ତ ତାକୁ ଟଙ୍କା ଦେଇ ଆସନ୍ତି । ପରେ ସେ ଟଙ୍କା ସମସ୍ତ ସେ ମୋତେ ଦେଇଦିଏ ଏବଂ କୁହେ – "ଯାକୁ ରଖିବୁ, ତୋ ପୁଅପାଇଁ ଖର୍ଚ୍ଚ କରିବୁ ।" ସେ କେବେ ଅଯଥା ଖର୍ଚ୍ଚ କରେନି; କିନ୍ତୁ କାହା ଧନରେ ଚଳିବାକୁ ଚାହେନି । ଆଜି ସେ ଚାଲିଯିବା ପରେ ମୁଁ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ିଛି । ମୋ ଭବିଷ୍ୟତ ଆଶାଭରସା ତୁଟିଯାଇଛି ।

ତା'ର ବିଭାଘର ଧୁମ୍‌ଧାମ୍‌ରେ ହେଲା । ଆମ ପରିବାରରେ ଆନନ୍ଦର ହାଟ । ନନା ବି ମନଲାଖି ବୋହୂଟିଏ ଆଣିଲେ ତା'ପାଇଁ । ଅନାଶକ୍ତ ସନ୍ନ୍ୟାସୀ ପ୍ରକୃତିର ପୁଅକୁ ସଂସାରୀ କରିବାପାଇଁ । ବିଭାଘରର କିଛି ମାସ ପରେ ତା' ସ୍ତ୍ରୀକୁ କହୁଥିଲା – "ଆମ ଘରେ ଏବେ ଆଉ ନିମିତ୍ତପର୍ବ କିଛି ନାହିଁ । ନନା

ଖୁସୀ, ଜଞ୍ଜାଳମୁକ୍ତ । କିଛିଦିନ ଯାଉ, ତା' ପରେ ଦେବାଂଶୁ (ମୋ ପୁଅ)ର ବ୍ରତଘର । ସେଇଟା ଆମେ କରିବା ।"

ଆନନ୍ଦର ହାଟରେ ଦୁଃଖ-ସମୁଦ୍ରର ଲହଡ଼ି । ହଠାତ୍ ବଜ୍ର ପଡ଼ିଲା ଆମ ଉପରେ । ମୋର ଚରମ ଦୁର୍ଭାଗ୍ୟ – ତା'ର ମରଶରୀରକୁ ଦେଖିଲି ପହିଲା ଭାଦ୍ରବର ସେଇ ଅଶୁଭ ବେଳାରେ । ଆମ ଚାରିଭଉଣୀଙ୍କ ମଧ୍ୟରୁ କେବଳ ମୁଁ ତା'ର ମୃତ ଶରୀରକୁ ସ୍ପର୍ଶ କଲି । ସବୁଦିନେ ଯେପରି ଚିନ୍ତାଶୂନ୍ୟ ଭାବେ ଶୋଇପଡ଼େ, ସେଇପରି ଶୋଇଛି । ମୁଖମଣ୍ଡଳରେ ଗାଢ଼ ପ୍ରଶାନ୍ତି । ନନା ମୋତେ ଜବରଦସ୍ତ ତା' ମରଶରୀର ପାଖରୁ ଟାଣିଆଣିଲେ । କହିଲେ – "ତାକୁ ଯିବାକୁ ଦେ, ସେ ଆମର ନୁହେଁ, ତାକୁ ଛାଡ଼୍, ତାକୁ ଯିବାକୁ ଦେ ।"

ମୋ ଅନ୍ୟ ଭଉଣୀମାନେ ଦୂରରେ ଥିଲେ । ହଠାତ୍ ଆସିପାରି ନ ଥିଲେ । ମୁଁ ତ ପୁଅକଢ଼େଇ – ମୋରି ଆଗରେ ହିଁ ସେ ଚାଲିଗଲା ସବୁଦିନପାଇଁ । ଯୋଗ୍ୟ ପିତାଙ୍କର ସୁଯୋଗ୍ୟ ସନ୍ତାନ, ଆମ ପରିବାରର ସୁଯୋଗ୍ୟ ଉତ୍ତରଦାୟାଦ । ଆମକୁ ଛାଡ଼ି ଚାଲିଗଲା । ପ୍ରଭୁ ତାକୁ ନେଇଗଲେ । ସେ ତ ଜାଣିନି ଯେ, ସେ ଯିବ ବୋଲି । କେତେ କଳ୍ପନା, କେତେ ସ୍ୱପ୍ନ ! ଆମପାଇଁ କେତେ ଚିନ୍ତା ! ସବୁ ଧ୍ୱଂସ ହୋଇଗଲା । ଆମେ ଭାବୁଛୁ - ଆମ ପରି କଳୁଷିତ ଲୋକମାନଙ୍କ ଭିତରେ ଠାକୁର ତାକୁ ରଖିବାକୁ ଚାହିଁଲେନି । ଗୋଟାଏ ଶୁଦ୍ଧଆତ୍ମା କିଛି ବାକିଆ କର୍ମ କରିବାକୁ ପଶିଆସିଥିଲା । ସ୍ୱଳ୍ପ ଜୀବନକାଳ ଭିତରେ ବହୁତ କିଛି କରିଛି - ଯାହା କରିବାର କଥା ।

ଆଜି ବି ବେଳେ ବେଳେ ଭ୍ରମଜାତ ହୁଏ – ସେ ଭୁବନେଶ୍ୱରରେ ଅଛି, ଛୁଟି ମିଳିଲେ ସେ ଘରକୁ ଆସିବ ! କେତେ ଛୁଟି ଯା' ଭିତରେ ଗଲାଣି; କିନ୍ତୁ ସେ ଆସୁନି । ନ ଆସୁ – ଭୁବନେଶ୍ୱରରେ ଜ୍ଞାନ-ବିଜ୍ଞାନ ପରିବେଶରେ ସେ ଥାଉ । ଏହା ବେଳେ ବେଳେ ମନରେ ଭ୍ରମ ଆଣେ; ପୁଣି ପ୍ରକୃତିସ୍ଥ ହେଲେ ମନେପଡ଼ିଯାଏ – ସେ ତ ଆଉ କେବେ ବି ଆସିବନି ଆମ ପାଖକୁ । କେଜାଣି, ଠାକୁରହିଁ ଜାଣନ୍ତି – ଆଉ କେଉଁ ଜନ୍ମରେ ଯଦି ଭେଟ ହେବ !! ସତରେ କ'ଣ ଆମେ ଯୋଗ୍ୟ ତା'ର ଆତ୍ମୀୟ-ସ୍ୱଜନ ହେବାପାଇଁ !!!



# Memoir

**Nandadyuti Acharya**
*(Younger brother)*
*Member, RAM Trust*

That day was 18th August 2014, Monday. I was in the college appearing my practical examination when I checked my phone, I had got 4 missed calls. I called back Maruti Kakei and he told me that Rudhish Bhaina had passed away. I simply could not believe. I couldn't thought anything. After sometime I thought may be I heard it wrong due to examination tension and friends shouting. Then I called my younger brother Hapu. He told me it again. I felt as if the ground was slipping away under my feet. Just the day before he came to Cuttack. I was with him whole day. I still remember that day fully and I still don't believe that news of his demise.

He was my elder affectionate brother and I was closed to him a lot my name i.e. 'Nandadyuti' was blessed by Param Pujyapad Acharyadev Sri Sri Dada. For my naming my father went to Deoghar and Bhaina was with him and when they returnd, Bhaina kept repeating my name loudly as he entered the house. I have heard this from my elders. We used to discuss a lot of things such as Sri Sri Thakur's ideology, science, literature and so on. He was a loving person with a sweet and lovely personality. He has guided me during my studies mostly during my preparation for medical which was very helpful to me.

Bhaina and I, we played an active role in Satsang Utsav at our village, Lathang. We together used to

conduct the 'Dikshya Griha' for at least past 5-6 years before his demise. This year when I was sitting at the 'Dikshya Griha', I missed him most. I missed his talks, his guidance.

I still recall a funny incident that happened when I was in school. I often visited Rahama where he used to stay. One such day I was there and he was composing a poem. To make the stanzas rhyme, I told him to name the lead girl character as 'Sweetie'. He teased me a lot about that for almost one and half year. I used to become angry and imitated but I liked that way and him being gone I miss those moments.

After his demise on that day, I travelled with his mortal body in the ambulance from cuttack to Lathang. I just couldn't cooperate with the fact that he was gone. This was first time I have lost somebody close to me. During his funeral rituals, I was given a herculean task, to capture some of his photos from his wedding video. I know it doesn't sound that difficult, but after his sudden demise when I have to watch the video it was just his memory haunting back and it was very hard for me. After I was done with the photos, I deleted the videos from my computer. The one of my friends told me, "You can delete his video from your PC, but can you delete him from your mind ?"

I could not answer that question. He is with us all the time. May be not in the earthly mortal form, but his memories are always with me. I know he is in a better place, far a better place. But I do miss him a lot here, still no matter what happens. He is my brother, my elder brother, my Rudhish Bhaina.



  

# ମୋ ବଡ଼ଭାଇନା

**କ୍ଷୀତିଶ ଆଚାର୍ଯ୍ୟ**
ସଭ୍ୟ, ରବୀଶ ଆଚାର୍ଯ୍ୟ ସ୍ମାରକୀ ଟ୍ରଷ୍ଟ
ଲଥାଙ୍ଗ, ଜଗତ୍‌ସିଂହପୁର

"ବୃହତ୍ସାମ ତଥା ସାମ୍ନାଂ ଗାୟତ୍ରୀ ଛନ୍ଦସାମହମ୍ ।
ମାସାନାଂ ମାର୍ଗଶୀର୍ଷୋଽହମୃତୂନାଂ କୁସୁମାକରଃ ॥"

– *ଗୀତା : ୧୦/୩୫*

ଅର୍ଥାତ୍, ମୁଁ ହେଉଛି ଗାୟନଯୋଗ୍ୟ ଶ୍ରୁତିମାନଙ୍କ ମଧ୍ୟରେ ବୃହତ୍ ସାମ ଓ ଛନ୍ଦମାନଙ୍କ ମଧ୍ୟରେ ଗାୟତ୍ରୀ ଛନ୍ଦ ଏବଂ ମାସମାନଙ୍କ ମଧ୍ୟରେ ମାର୍ଗଶୀର ଓ ଋତୁମାନଙ୍କ ମଧ୍ୟରେ ବସନ୍ତ ଅଟେ ।

ଏକଥା ଭଗବାନ୍ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି । ମାସମାନଙ୍କ ମଧ୍ୟରେ ମାର୍ଗଶୀର ମାସ ମୁଁ ଅଟେ । ଏହି ପୁଣ୍ୟ ମାସରେ ମୋର ବଡ଼ଭାଇନାଙ୍କର ଜନ୍ମ । ସେହିଦିନ ଥିଲା ମାର୍ଗଶୀର ମାସ ପ୍ରଥମାଷ୍ଟମୀ ଗତେ ନବମୀ ତିଥି । ସତେ ଯେପରି ଆଚାର୍ଯ୍ୟ ପରିବାର ଆନନ୍ଦ ଉଲ୍ଲାସରେ ଭରପୂର । ଜେଜେବାପା (ସ୍ୱର୍ଗତ ରମାନାଥ ଆଚାର୍ଯ୍ୟ)ଙ୍କର ଗୋଡ଼ ତଳେ ଲାଗୁ ନ ଥିଲା । ମା' (ସାବିତ୍ରୀ ଆଚାର୍ଯ୍ୟ) କୁହନ୍ତି – "ଜେଜେବାପା ଥିଲେ ଶିକ୍ଷାବିତ୍, କଠୋର ନ୍ୟାୟବାଦୀ ଓ ଧର୍ମପରାୟଣ ।" ଯେତେବେଳେ ଜେଜେବାପାଙ୍କ ହାତ ଧରି ଗାଁ ଦାଣ୍ଡରେ ବଡ଼ଭାଇନା ଠୁକୁ ଠୁକୁ ହୋଇ ଟୋଲ୍‌କୁ ଯାଉଥିଲେ, ଗାଁ ଲୋକ ଘଡ଼ିଏ ଚାହୁଁଥିଲେ ଓ କହୁଥିଲେ କି ଗୋରା ତକ୍ ତକ୍ ବୁଢ଼ାବାପ ଓ ନାତିଙ୍କ ଚେହେରା । ମୁଁ ସ୍ୱର୍ଗତ ଜେଜେବାପାଙ୍କୁ ଦେଖିନି, କାରଣ ମୁଁ ଜନ୍ମହୋଇ ନ ଥିଲି । ଭାଇନା ମଧ୍ୟ ଜେଜେବାପାଙ୍କ କଥା ମୋ ଆଗରେ କହୁଥିଲେ ।

  

ମୋତେ ଚାରିବର୍ଷ ହୋଇଥାଏ । ମୋର ପୂଜ୍ୟ ବଡ଼ନନା ରାହାମାରେ ରହୁଥିଲେ । ମୋତେ ନେଇ ତାଙ୍କ ପାଖରେ ରଖିଥିଲେ । ସେତେବେଳେ ବଡ଼ଭାଇନା ତିର୍ତ୍ତୋଲ କଲେଜରେ ପଢୁଥିଲେ । ସେ ମୋତେ ଭାରି ଭଲ ପାଉଥିଲେ । ମୋତେ ବଡ଼ନନା 'ଟିପୁ' ବୋଲି ଡାକୁଥିଲେ । ବଡ଼ଭାଇନା ମଧ୍ୟ ମୋତେ ଟିପୁ ବୋଲି ଡାକୁଥିଲେ । କଲେଜରୁ ଆସି ପ୍ରଥମେ ମୋତେ ଟିପୁ ଟିପୁ ବୋଲି ଚହଳ ପକାଉଥିଲେ ଓ ଗେଲ କରୁଥିଲେ । ସମୟେ ସମୟେ ମୋତେ ତାଗିଦ୍ କରୁଥିଲେ । ମୁଁ ମଧ୍ୟ ତାଙ୍କୁ ଡରୁଥିଲି । ଯେତେବେଳେ ସେ ବଡ଼ ପାଟିରେ ତାଗିଦ୍ କରୁଥିଲେ, ସେତେବେଳେ ମା' ଓ ବଡ଼ବୋଉ କହୁଥିଲେ – "କାହିଁ ତା' ସଙ୍ଗରେ ଲାଗୁଛୁ ।" ସେ ଓ ମୁଁ ସାଙ୍ଗ ହୋଇ ଶୋଉଥିଲୁ । ମୋତେ ସେ ଅ, ଆ, ଏକ, ଦୁଇ... ଇତ୍ୟାଦି ପଣକିଆ ଓ A, B, C, D... ପଢ଼ାଉଥିଲେ । ବଡ଼ନନା ମୋତେ ରାହାମା ବଜାରକୁ ହାତଧରି ନିଅନ୍ତି । ବସାରେ ମୋ ସାଙ୍ଗରେ ଖେଳନ୍ତି । ଇତିନା ନାନୀ, ଗୁଣ୍ଡିଚା ନାନୀ, ମମୁନା ନାନୀ ମୋ ସାଙ୍ଗରେ ଲାଗନ୍ତି ଓ ଗେହ୍ଲା ବି କରନ୍ତି । ଯଦି କେହି ମୋ ଉପରେ ରାଗନ୍ତି, ସେ ସହିପାରନ୍ତି ନାହିଁ । କୁହନ୍ତି ଯେ – "ଟିପୁ ! ଖବର କ'ଣ ହୋଇଛି ଆସିଲୁ ।" ଏହା କହି ସେ ଗେହ୍ଲା କରନ୍ତି । କିଛି ବର୍ଷ ପରେ ମୁଁ ଗାଁକୁ ଆସିଲି । ମୁଁ ସେତେବେଳେ ଛୋଟ । ସେ ମଧ୍ୟ ଆଠ ଦିନେ - ପନ୍ଦର ଦିନେ ଗାଁକୁ ଆସୁଥିଲେ । ପୂର୍ବପରି ମୋତେ ଗେହ୍ଲା କରୁଥିଲେ । ମୋ ପିଠିକି ଥାପୁଡ଼ାଇ କହୁଥିଲେ – "କ'ଣ ପଢୁଛୁ ନା ନାହିଁ ? (ମୋ ସାନଭାଇ) ଜ୍ୟୋତି ପାଠ ପଢୁଛି ନା ନାହିଁ ?"

ସେ ଭୁବନେଶ୍ୱରରେ ଅଧ୍ୟାପକ ଥିଲେ । ସେ ଜ୍ଞାନୀ ଥିଲେ । ସେ ସବୁବେଳେ ପାଠପଢ଼ା ଓ ଲେଖାରେ ମନ ଦେଉଥିଲେ । ସେ ବହି ଖଣ୍ଡିଏ ପାଇଲେ, ତରତର ହୋଇ ପଢ଼ି ପକାଉଥିଲେ । ସେ ଟି.ଭି. ଦେଖିବାକୁ ପସନ୍ଦ କରୁ ନ ଥିଲେ । ସେ ଆଧ୍ୟାତ୍ମିକବାଦୀ ଥିଲେ । ସେ ଗାଁକୁ ଭାରି ଭଲ ପାଉଥିଲେ । ସେ ଗାଁକୁ ଆସିଲେ ସେ ଗାଁ କଥା ସମସ୍ତଙ୍କଠାରୁ ପଚାରି ବୁଝୁଥିଲେ ।





ସେଦିନ ଥିଲା ୨୦୧୪ ମସିହା ଅଗଷ୍ଟ ୧୮ ତାରିଖ ସୋମବାର ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ଗତେ ନବମୀ ତିଥି । ପୁରୁଷୋତ୍ତମ ଶ୍ରୀଶ୍ରୀଠାକୁରଙ୍କ ଜନ୍ମ ମାସ । ସେହିଦିନ ଚାରିଆଡ଼େ ଭାଦ୍ର ସତ୍‌ସଙ୍ଗ ପରିକ୍ରମା ଆରମ୍ଭ ।

ଆମ ଲଥାଙ୍ଗ ସତ୍‌ସଙ୍ଗ କେନ୍ଦ୍ରରେ ମଧ୍ୟ ସତ୍‌ସଙ୍ଗ ହେବ । ସମସ୍ତେ ଆନନ୍ଦ ଉଲ୍ଲାସରେ କେନ୍ଦ୍ରରେ ଉପସ୍ଥିତ । ପ୍ରଥମ ପାଳି ଆମରି । ଆମ ଘରର ସମସ୍ତ ସଦସ୍ୟ ଆନନ୍ଦର ସହିତ ଲାଗିପଡ଼ିଛନ୍ତି । ଠିକ୍ ସକାଳ ୭ ଘଟିକାରେ ସତ୍‌ସଙ୍ଗ ଆରମ୍ଭ ହେଲା । ପ୍ରାର୍ଥନା, ବାଣୀ ପାଠ, ଭଜନ, କୀର୍ତ୍ତନ ଓ ସଦାଲୋଚନା ଖୁବ୍ ସୁନ୍ଦର ଭାବରେ ହେଲା । ହଠାତ୍ ବଡ଼ନନାଙ୍କ ମୋବାଇଲ୍ ରିଙ୍ଗ୍ ହେଲା । ତା' ପରେ ବଡ଼ନନା ଅସ୍ତବ୍ୟସ୍ତ ହୋଇପଡୁଥିଲେ । କାକୁଙ୍କୁ ଡାକି ଘରକୁ ନେଇ ଆସିଲେ । ତା' ପରେ ଜ୍ୟୋତି ହାତରେ ଖବର ପଠାଇଲେ । ତା'ପରେ ମୁଁ ମୋ ନନା ଠାକୁବାଡ଼ି ବନ୍ଦ କରି ଆସିବା ବାଟରେ ବଡ଼ନନା ଓ କାକୁ ଭୁବନେଶ୍ୱର ଯାଉଥିଲେ । ନନାଙ୍କୁ କେବଳ କହିଲେ ଆମ ରଦ୍ଧୀଶ ତ ଚାଲିଗଲା । ଏହିକଥା କହି ବଡ଼ନନା ଭୁବନେଶ୍ୱର ଚାଲିଗଲେ ।

ହଠାତ୍ ଦାରୁଣ ଖବର ଶୁଣି ଗାଁଦାଣ୍ଡରେ ଲୋକ ଏପଟ ସେପଟ ହେଉଥା'ନ୍ତି । ଆମ ଘରେ ସେହିଦିନ ଗୁରୁଭାଇ, ବନ୍ଧୁବାନ୍ଧବ, ଅନ୍ୟାନ୍ୟ ବ୍ୟକ୍ତିଗଣ ଅପେକ୍ଷା କେବଳ ସେହି ପୁଣ୍ୟ ଆତ୍ମାଙ୍କର ଶରୀରକୁ । ପ୍ରଥମାଷ୍ଟମୀରେ ପ୍ରଥମ ପୁରୁଷଙ୍କୁ ପୂଜା କରାଯାଏ । ପ୍ରଥମ ପୁରୁଷଙ୍କ ପୂଜା ପରେ ସେ ଜନ୍ମ ଓ ଆମମାନଙ୍କ ଭିତରେ ବଡ଼ ହୋଇଥିବାରୁ ତେଣୁ ସେ ଜ୍ୟେଷ୍ଠ । ଭାଦ୍ରବ ମାସ ପ୍ରେଷ୍ଠପୁରୁଷଙ୍କର ଜନ୍ମମାସ । ତେଣୁ ବଡ଼ଭାଇନା (ସ୍ୱର୍ଗତ ରଦ୍ଧୀଶ ଆଚାର୍ଯ୍ୟ)ଙ୍କର ପୁଣ୍ୟ ଆତ୍ମା ସେହି ପ୍ରେଷ୍ଠ ପୁରୁଷୋତ୍ତମ ଶ୍ରୀଶ୍ରୀଠାକୁରଙ୍କର ଶ୍ରୀପାଦପଦ୍ମରେ ସ୍ଥାନ ପାଇଥିବେ ନିଶ୍ଚୟ । ତେଣୁ ସେ ଆମ୍ଭମାନଙ୍କର ଜ୍ୟେଷ୍ଠ ଓ ଶ୍ରେଷ୍ଠ ଏବଂ ଚିରନମସ୍ୟ ।







# ତାଙ୍କର ଲକ୍ଷ୍ୟ ଥିଲା - ଜ୍ଞାନାର୍ଜନ

ଜ୍ୟୋତିଷ ଆଚାର୍ଯ୍ୟ
(ସାନଭାଇ)

ମାନବ ମରଣଶୀଳ । ଜୀବନ କ୍ଷଣଭଙ୍ଗୁର । ଏହି କ୍ଷଣଭଙ୍ଗୁର ଜୀବନକାଳ ମଧ୍ୟରେ ମାନବ ଯେଉଁ ସୁକର୍ମ କରେ, ତାହା ତାକୁ ଅମର କରି ରଖେ । ଗୀତାରେ କୁହାଯାଇଛି – "ଜାତସ୍ୟ ହିଁ ଧ୍ରୁବୋମୃତ୍ୟୁର୍ଧ୍ରୁବ ଜନ୍ମ ମୃତସ୍ୟ ଚ ।" ସଂସାରରେ ମୃତ୍ୟୁ ଅନିବାର୍ଯ୍ୟ । କେବଳ ମହାପୁରୁଷଗଣ ସ୍ୱୀୟ କର୍ମବଳରେ ମୃତ୍ୟୁକୁ ଜୟ କରିଥାଆନ୍ତି । ପୁଣି କଥାରେ ଅଛି –

"ମର୍ତ୍ତ୍ୟମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ।"

ଭଗବାନ ରାମଚନ୍ଦ୍ର ନରଦେହ ଧରି ତ୍ରେତୟା ଯୁଗରେ ଏହି ବସୁନ୍ଧରା ବକ୍ଷରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମୃତ୍ୟୁ ମଧ ହୋଇଥିଲା । ତାଙ୍କୁ ମଧ ଶରୀର ତ୍ୟାଗ କରିବାକୁ ପଡ଼ିଥିଲା । ଦ୍ୱାପରରେ ଶ୍ରୀକୃଷ୍ଣ ମଧ ଦେହତ୍ୟାଗ କରିଥିଲେ, ଏଭଳି ଅନେକ । ଆମେ ତ ସାଧାରଣ ମାନବ । କିନ୍ତୁ ଯେଉଁ ମାନବ ସୁକର୍ମ ଓ ତା'ର ଜ୍ଞାନ ବଳରେ ଅନ୍ୟର ହୃଦୟକୁ ଜୟ କରିଥାଏ, ସେ ଅନ୍ୟମାନଙ୍କ ହୃଦୟରେ ଅମର ହୋଇ ରହିଥାଏ । ସେହିପରି ଜଣେ ଅମର ଆତ୍ମା ହେଉଛନ୍ତି ମୋର ପୂଜ୍ୟ ରବୀଶ ଭାଇନା । ସେ ଥିଲେ ଜ୍ଞାନର ଭଣ୍ଡାର । ଛାତ୍ରାବସ୍ଥାରେ ସେ ଅତ୍ୟନ୍ତ ବିଦ୍ୟାନୁରାଗୀ ଥିଲେ । ଶିକ୍ଷଣୀୟ ପୁସ୍ତକଗୁଡ଼ିକ ସେ ଅଧ୍ୟୟନ କରୁଥିଲେ । ପୁସ୍ତକ ଅଧ୍ୟୟନ କରି ସେ ଅଧିକ ଜାଣିବାକୁ ଇଛା ପ୍ରକାଶ କରୁଥିଲେ । ତାଙ୍କର ଅସାଧାରଣ ଧୀଶକ୍ତି ଥିଲା । ପାଠ୍ୟପୁସ୍ତକ ବ୍ୟତୀତ ମୂଲ୍ୟବାନ୍ ଗ୍ରନ୍ଥ ସେ ଅଧ୍ୟୟନ କରୁଥିଲେ । ଜ୍ଞାନାର୍ଜନପାଇଁ ସେ ବିଜ୍ଞାନ, ସାହିତ୍ୟ, ଇଂରାଜୀ ଇତ୍ୟାଦି ପୁସ୍ତକମାନ ଅଧ୍ୟୟନ କରୁଥିଲେ । ଏହି ବିଦ୍ୟାନୁରାଗ ତାଙ୍କୁ ଅପାର ଆନନ୍ଦ ଦେଉଥିଲା । ସେ ସର୍ବଦା ପାଠରେ ହିଁ ବୁଡ଼ିରହୁଥିଲେ । ଏହାଛଡ଼ା ତାଙ୍କୁ ଅନ୍ୟ କୌଣସି କାର୍ଯ୍ୟ ଭଲ ଲାଗୁ ନ ଥିଲା । ଖେଳିବା,





ବୁଲିବା, ଟି.ଭି. ଦେଖିବା – ଏଗୁଡ଼ିକ ପସନ୍ଦ କରୁ ନ ଥିଲେ । ସେ ପ୍ରାଣୀବିଜ୍ଞାନ ବିଭାଗରେ ଅଧ୍ୟାପକ ଥିଲେ ଏବଂ The Indian Science Congress Association ପକ୍ଷରୁ ପୁରସ୍କୃତ ମଧ୍ୟ ହୋଇଥିଲେ । ମୁଁ ଥିଲି ତାଙ୍କ ପ୍ରିୟ 'ଟିମା' । ସେ ମୋତେ 'ଟିମା' ବୋଲି ଡାକୁଥିଲେ । ସେ ସର୍ବଦା ଭୁବନେଶ୍ବରରେ ରହୁଥିଲେ । ଯେତେବେଳେ ଗାଁକୁ ଆସନ୍ତି, ସେ ମୋତେ ସବୁବେଳେ ପଢ଼ିବା, ଟ୍ରାନ୍ସଲେସନ୍, ଲେଖାଲେଖି କରିବାକୁ ନିର୍ଦ୍ଦେଶ ଦେଉଥିଲେ । ପାଠ ପଢ଼ିଲାବେଳେ ସର୍ବଦା ଧୀର ଓ ଗମ୍ଭୀର ଭାବରେ ଓ ସମ୍ମାନର ସହ ପଢ଼ିବା ଉଚିତ । କାରଣ ସେ ବିଦ୍ୟାକୁ ମନୁଷ୍ୟର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଭାବେ ବିବେଚନା କରୁଥିଲେ । ତାଙ୍କର ଜୀବନ ଥିଲା ସାଧାରଣ ଚଳଣି ଏବଂ ଉଚ୍ଚ ଚିନ୍ତାଧାରା । ଯଦିଓ ତାଙ୍କର ୩୦ ବର୍ଷ ବୟସରେ ଦେହତ୍ୟାଗ ହୋଇଥିଲା – ଏହା ଥିଲା ଶରୀରର ବୟସ । ମାତ୍ର ତାଙ୍କର ମାନସିକ ବୟସ ଥିଲା ଊର୍ଦ୍ଧ୍ୱରେ । ସ୍ୱାମୀ ବିବେକାନନ୍ଦଙ୍କର ୩୯ ବର୍ଷ ବୟସରେ ମୃତ୍ୟୁ ହୋଇଥିଲା । ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ ମଧ୍ୟ ୩୧ ବର୍ଷରେ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ମାନସିକତା ଓ ଚିନ୍ତାଧାରାର ବୟସ ଥିଲା ଊର୍ଦ୍ଧ୍ୱରେ । ଗାଁକୁ ଆସିଲେ କେବେ କେମିତି ଥରେ ଅଧେ ତାସ୍ ଖେଳନ୍ତି, ବୁଲାବୁଲି କରନ୍ତି । ସେ ପ୍ରାୟ ଅଧିକାଂଶ ସମୟ ଗାଁକୁ ଆସୁଥିଲେ । ସେ ଗାଁକୁ ଅଧିକ ଭଲ ପାଉଥିଲେ । କିନ୍ତୁ ତାଙ୍କର ଲକ୍ଷ୍ୟ ଥିଲା ଜ୍ଞାନାର୍ଜ୍ଜନ । ସେ ଜ୍ଞାନାର୍ଜ୍ଜନପାଇଁ ଶିକ୍ଷକ ଓ ଅଧ୍ୟାପକମାନଙ୍କ ସାଙ୍ଗରେ ଅଧିକ ମିଶୁଥିଲେ । କାରଣ ସେ ଜାଣିଥିଲେ ଯେ, "Knowldge is power" । ରାଜା କେବଳ ରାଜ୍ୟରେ ହିଁ ପୂଜା ପାଆନ୍ତି; ମାତ୍ର ଯେ ବିଦ୍ୱାନ୍ ସେ ସବୁଠି ପୂଜା ପାଏ । ସେ ମଧ୍ୟ ସବୁଠି ପୂଜା ପାଉଥିଲେ ଏବଂ ଏବେ ମଧ୍ୟ ସମସ୍ତଙ୍କର ହୃଦୟରେ ପୂଜ୍ୟ ହୋଇଅଛନ୍ତି । ତେଣୁ "Death keeps no calender", ମୃତ୍ୟୁ ଆସିବାର ସୂଚନା ଦିଏନା । ମୃତ୍ୟୁ କେତେବେଳେ ନା କେତେବେଳେ ଆସିବ । ତେଣୁ ବଞ୍ଚିଥିବା ଜୀବନ ଭିତରେ ସୁକର୍ମ କରିବା ଉଚିତ ବୋଲି ଆମେ ତାଙ୍କ ସ୍ୱଳ୍ପ ଜୀବନରୁ ଶିଖିଲୁ ।



  

# Good-Bye Brother

**Dr. Rabiratna Dash**
Associate Professor
Deptt. of Agronomy, OUAT, BBSR

Heaven has called upon you today
Leaving so many words left to say.

But now it's too late for your time has come
Words unspoken, I am sure everybody has some.

Regrets & wishes are probably there too
But lasting forever are memories of you.

I was there when you needed a place to stay
Just like you would be there for me
every night and day.

There have been many times that we disagreed
But we were there for each other in time of need.

Some say something and others say
some about the cause of your death
But the cause is your type-1 behaviour,
which is my strongest faith.

Medical science says type-1 behaviour is to be- the best in all spheres of life
Which you had inherited it and that's made all of us proud, after your great life.

Now its time for me to say Good-Bye
Until we meet again in heave to fly.

May your spirit soar in freedom,
from the fears that grippd so tight
May you find the peace you searched for,
as you wandered, lost in the night

•





ବିଭିନ୍ନ ପତ୍ରପତ୍ରିକାରେ ଋଦ୍ଧୀଶଙ୍କ ମୃତ୍ୟୁ ସମ୍ପର୍କିତ ଶୋକ ସମ୍ବାଦ ପ୍ରକାଶ ପାଇଥିଲା । ସେ ସମସ୍ତ ପତ୍ରପତ୍ରିକାର ସମ୍ପାଦକଙ୍କୁ ଜଣାଉଛୁ କୃତଜ୍ଞତା । ମାସିକ 'ଊର୍ଜ୍ଜନା' ୨୦୧୫-ଜାନୁୟାରୀ ସଂଖ୍ୟାରେ ଯେଉଁ ଶୋକସମ୍ବାଦ ପରିବେଷଣ କରିଥିଲେ, ତାହା ନିମ୍ନରେ ସନ୍ନିବେଶିତ ହେଲା ।

*– ସମ୍ପାଦନା ମଣ୍ଡଳୀ*

## ଶୋକ ସମ୍ବାଦ



ଶ୍ରୀଯୁକ୍ତ ହୃଷୀକେଶ ଆଚାର୍ଯ୍ୟ (ସ.ପ୍ର.ଋ)ଙ୍କ ପୁତ୍ର ଯାଜକ ଶ୍ରୀମାନ୍ ଋଦ୍ଧୀଶ ଆଚାର୍ଯ୍ୟ ଗତ ତା ୧୮.୦୮.୨୦୧୪ ରିଖ, ସୋମବାର ସକାଳେ ଭୁବନେଶ୍ୱରସ୍ଥ ତାଙ୍କ ଓ.ୟୁ.ଏ.ଟି. କ୍ୱାର୍ଟର୍ସରେ ହୃଦ୍‌ଘାତରେ ହଠାତ୍ ପରଲୋକ ଗମନ କରନ୍ତି । ସେ ବାଲ୍ୟାବସ୍ଥାରୁ ହିଁ ଇଷ୍ଟକର୍ମରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ସେ ଆଜନ୍ମ ନିରାମିଷାଶୀ, ଇଷ୍ଟପ୍ରାଣ, ଅଜାତଶତ୍ରୁ, ସରଳ, ନିରାଡ଼ମ୍ବର ଓ ମେଳାପୀ ବ୍ୟକ୍ତି ଥିଲେ । ସେ ଗତ ତା ୧୫.୦୪.୨୦୧୩ରିଖରେ ପବିତ୍ର ଯାଜକ ପାଞ୍ଜାପ୍ରାପ୍ତିରେ ଆଶୀର୍ବାଦପୁଷ୍ଟ ହୋଇଥିଲେ । ଲଥାଙ୍ଗ (ଜଗତ୍‌ସିଂହପୁର) ତଥା ଭୁବନେଶ୍ୱର ସତ୍‌ସଙ୍ଗ ଜଗତରେ ସେ ବେଶ୍ ପରିଚିତ ଥିଲେ । ତାଙ୍କ ପରି ଜଣେ ଉଚ୍ଚଶିକ୍ଷିତ ଗବେଷକ ତଥା ଇଷ୍ଟପ୍ରାଣ ଯୁବପ୍ରତିଭାଙ୍କ ଅକାଳ ବିୟୋଗରେ ଉପରୋକ୍ତ ଦୁଇ ଅଞ୍ଚଳରେ ଶୋକର ଛାୟା ଖେଳିଯାଏ । ପରମପିତାଙ୍କ ରାତୁଲ ଚରଣରେ ତାଙ୍କର ସାଧନୋଚିତ ଧାମପ୍ରାପ୍ତିର କାମନା କରି ପ୍ରାର୍ଥନା ଜଣାଉଛୁ ।

# ❖ ରଦ୍ଧୀଶ ରଚନାବଳୀ ❖



ସମ୍ଭାବନାମୟ ଯୁବ ପ୍ରତିଭା ରଦ୍ଧୀଶ ଆଚାର୍ଯ୍ୟଙ୍କ ଅକାଳ ବିୟୋଗ ପରେ ତାଙ୍କର ପ୍ରକାଶିତ ଓ ଅପ୍ରକାଶିତ ରଚନାବଳୀ ସଂଗ୍ରହ କରିବାର ପ୍ରଚେଷ୍ଟା ଜାରି ରହିଛି । ଏହି ଅଧ୍ୟାୟରେ ତାଙ୍କ ଲିଖିତ ଅଳ୍ପ କେତୋଟି ରଚନା ପ୍ରକାଶ କରାଗଲା । ତାଙ୍କର ବହୁ ଗବେଷଣାଧର୍ମୀ ରଚନାସବୁ ସଂଗ୍ରହ କରି ଭବିଷ୍ୟତରେ ପ୍ରକାଶ କରିବାର ଯୋଜନା ରଖିଛୁ ।

— *ସମ୍ପାଦନାମଣ୍ଡଳୀ*





# ଶ୍ରୀଶ୍ରୀଠାକୁରଙ୍କ ବିଜ୍ଞାନ-ଭାବନା

ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ବିଜ୍ଞାନ-ଭାବନା ସହଜାତ । ଧର୍ମ, ଦର୍ଶନ, ବିଜ୍ଞାନ ଓ ଆଧ୍ୟାତ୍ମିକତା ଇତ୍ୟାଦି ସବୁକିଛି ଜୀବନପାଇଁ, ଜୀବନର ବଞ୍ଚିବା-ବଢ଼ିବାପାଇଁ, ଜୀବନର ନଷ୍ଟ ବା ଧ୍ୱଂସପାଇଁ ନୁହେଁ । ବୈଜ୍ଞାନିକ କୃଷ୍ଣପ୍ରସନ୍ନ ଭଟ୍ଟାଚାର୍ଯ୍ୟଙ୍କର ଶ୍ରୀଶ୍ରୀଠାକୁରଙ୍କୁ ପ୍ରଥମ ସାକ୍ଷାତ୍‌କାର ଦିନଗୁଡ଼ିକରେ ବିଜ୍ଞାନ ସମ୍ବନ୍ଧୀୟ ବହୁ ଆଲୋଚନା କରିଛନ୍ତି । ସେତେବେଳେକାର ସଦ୍ୟତମ ଆବିଷ୍କାର - ଆଟମ୍, ଇଲେକ୍ଟ୍ରୋନ୍, ରେଡିୟମ୍, ଏକ୍ସ-ରେ, କ୍ୱାଣ୍ଟା ପ୍ରଭୃତିର ଆଲୋଚନା ଠାକୁରଙ୍କ ନିକଟରୁ ଶୁଣି ବିସ୍ମୟ ପ୍ରକାଶ କରି ଠାକୁରଙ୍କୁ ପଚାରିଥିଲେ – " କିପରି ଆପଣ ଇଲେକ୍ଟ୍ରୋନ, କ୍ୱାଣ୍ଟା ଇତ୍ୟାଦି ବିଷୟ କହିପାରୁଛନ୍ତି ? ନିଶ୍ଚୟ ଆପଣ ଏସବୁ ପଢ଼ିଛନ୍ତି ।" ଏହାର ଉତ୍ତରରେ ସେଦିନ ଶ୍ରୀଶ୍ରୀଠାକୁର କହିଥିଲେ – " ନା ! ମୋ ପିଲାଦିନରୁ ମୁଁ ଅନେକ ସମୟରେ ଦେଖିଛି ବିଶ୍ୱବ୍ରହ୍ମାଣ୍ଡ ଆଲୋକ କଣିକାରେ ତରଳିଯାଉଛି ଏବଂ ସେହି ଆଲୋକ ଘନୀଭୂତ ହୋଇ ମୋ ଚାରିପଟ ବସ୍ତୁରେ ପରିଣତ ହେଉଛି ।" ବୈଜ୍ଞାନିକ କୃଷ୍ଣପ୍ରସନ୍ନ ଲେଖିଛନ୍ତି – " ତାଙ୍କ କଥାଗୁଡ଼ିକ ଆଗ୍ନେୟଗିରି ଉଦ୍‌ଗୀରଣ ଭଳି, ଅଥଚ ମିଷ୍ଟି-ମଧୁର ଥିଲା । ମୁଁ ବୁଝିପାରିଲି ଯେ, ସେ ବିଜ୍ଞାନକୁ ଦେଖିପାରୁଛନ୍ତି ଏବଂ ଅଲଟ୍ରା-ଆଟମ୍‌କୁ ଇନ୍ଦ୍ରିୟଗ୍ରାହ୍ୟ କରିପାରୁଛନ୍ତି ।"

ବିଜ୍ଞାନର ଅତ୍ୟାଧୁନିକ ଚରମ ବିସ୍ମୟକର ଉଦ୍ଭାବନ ହେଉଛି - Gene (ଜିନ୍) । Gene ହେଉଛି DNA (ଡାଇଅକ୍ସିରିବୋ ନିଉକ୍ଲିକ୍ ଏସିଡ୍)ର ଅଂଶ । DNA ଭିତରେ ଜିନ୍ ପ୍ରସୂତ ରହିଛି, ଯାହା ଜୀବର ବୈଶିଷ୍ଟ୍ୟ ବହନ କରେ । ଆଧୁନିକ ବିଜ୍ଞାନ ଯେତେବେଳେ ଏହି ଜିନ୍‌ର ରହସ୍ୟ ଉଦ୍‌ଘାଟନ କରିବାରେ ବ୍ୟସ୍ତ ଏବଂ ଜିନ୍‌କୁ ବଦଳାଇ ବା ପରିବର୍ତ୍ତନ କରି ଦୁରାରୋଗ

ଜଟିଳ ବ୍ୟାଧି ଉପଶମ କରିବାପାଇଁ ଚେଷ୍ଟିତ; ବହୁ ପୂର୍ବରୁ ଶ୍ରୀଶ୍ରୀଠାକୁର 'ଜିନ୍' ବିଷୟରେ ନାନା ଭାବରେ କହିଛନ୍ତି । 'ଜିନ୍'କୁ ଶ୍ରୀଶ୍ରୀଠାକୁର 'ଜନି' ବୋଲି ଅଭିହିତ କରିଛନ୍ତି । ଏହି 'ଜିନ୍' ବା 'ଜନି' ହେଉଛି ଜୀବ ବଂଶଗତିର କ୍ଷୁଦ୍ରତମ ଏକକ । ଏହା ମାଧ୍ୟମରେ ବିଭିନ୍ନ ବୈଶିଷ୍ଟ୍ୟ ପିତୃ-ମାତୃ ପ୍ରଜନ୍ମରୁ ଅପତ୍ୟ ପ୍ରଜନ୍ମକୁ ସଞ୍ଚାରିତ ହୁଏ । ଅନେକ କ୍ଷାରମୂଳକ ଜୋଡ଼ ସମନ୍ୱିତ ଦ୍ୱିତନ୍ତ୍ରୀ ଡି.ଏନ୍.ଏ.ରୁ ଗୋଟିଏ ଜିନ୍ ଗଠିତ ହୁଏ । କ୍ରମଜନ୍‌ର ବିଶେଷ ବିଶେଷ ଅଂଶରେ ଗୋଟିଏ ଗୋଟିଏ ବିଶେଷ ଜିନ୍ ଅବସ୍ଥାନ କରେ ।

୧୯୪୨ ମସିହାରେ 'ଜିନ୍' ସମ୍ବନ୍ଧରେ ବିଜ୍ଞାନିମାନଙ୍କର ଧାରଣା ଯେତେବେଳେ ସ୍ୱଷ୍ଟ ହୋଇନି, ସେତେବେଳେ ଶ୍ରୀଶ୍ରୀଠାକୁର କହିଥିଲେ - ଶୁକ୍ରାଣୁ ଓ ଡିମ୍ବାରୁ (Sperm and Ovum) ମଧ୍ୟରେ ନିହିତ ଜିନ୍‌ରେ ବଂଶଗତ ସଂସ୍କାରଗୁଡ଼ିକ ସୂକ୍ଷ୍ମଦାନା (Super-microscopic grannules) ପରି ଥାଏ । ଆଉ ସେଗୁଡ଼ିକ ସଙ୍ଗତିଶୀଳ ହେଲେ ସେମାନଙ୍କ ସଂଯୋଗରେ ସୁସନ୍ତାନ ଆସେ । ୧୯୪୮ ମସିହାରେ ବିଶ୍ୱରେ 'ଜିନ୍' ସମ୍ବନ୍ଧୀୟ ଧାରଣା ତେବେ ବି ଅସ୍ୱଷ୍ଟ ଥାଏ, ଶ୍ରୀଶ୍ରୀଠାକୁର କହିଲେ – ଜୀବକୋଷରେ ଜିନ୍‌ଗୁଡ଼ିକ ଗୋଟିଏ ପାରସ୍ପର୍ଯ୍ୟ (Sequence) ରକ୍ଷା କରନ୍ତି । ତେଣୁ ପୃଥିବୀର ସବୁ ମଣିଷଙ୍କ ଅବୟବ, ମୁଣ୍ଡଠାରୁ ପାଦ ପର୍ଯ୍ୟନ୍ତ ଏକପ୍ରକାର ।

ଶ୍ରୀଶ୍ରୀଠାକୁରଙ୍କ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ କଥା ହେଲା – 'ଜିନ୍" ର ବିକାଶ (geneର unfoldment) । ନାମ କରିବା ସମୟରେ ଶ୍ରୀଶ୍ରୀଠାକୁରଙ୍କର ବିଭିନ୍ନ ପ୍ରକାର ଅନୁଭୂତି, ଯେପରି ଆଲୋକ, ଜ୍ୟୋତି ଦର୍ଶନ ଇତ୍ୟାଦି ହେଉଥାଏ । ତାଙ୍କ ମତରେ ତାହା ହେଉଛି ଏକ ଏକ ଜିନ୍ ସକ୍ରିୟ (active) ହୁଏ ବୋଲି । ସକ୍ରିୟ (active) ହୁଏ, ଅର୍ଥାତ୍ ଜିନ୍ ବିକଶିତ (unfold) ହୋଇ ପ୍ରୋଟିନ୍ ହୁଏ ଏବଂ ନାନା ପ୍ରକାର ପ୍ରୋଟିନ୍ କ୍ରିୟାରୁ ଏଇସବୁ ଅନୁଭୂତିର ସୃଷ୍ଟି । 'ଜିନ୍' ସମ୍ବନ୍ଧୀୟ ପର୍ଯ୍ୟବେକ୍ଷଣ ସବୁହିଁ ତାଙ୍କର ଅନୁଭୂତିରୁ ବହି ପଢ଼ି ବା ପରୀକ୍ଷା ନିରୀକ୍ଷା କରି ନୁହେଁ । ଶ୍ରୀଶ୍ରୀଠାକୁରଙ୍କର ଏହିସବୁ ଅନୁଭୂତିର କଥା ବିଜ୍ଞାନିମାନଙ୍କୁ ବିସ୍ମିତ କରିଛି ଏବଂ ଗବେଷଣାପାଇଁ ଖୋରାକ ମଧ୍ୟ ଯୋଗାଇଛି ।

ଆମେ ଜାଣୁ ଯେ, ଆଧ୍ୟାତ୍ମିକତା ସୁସ୍ଥ ମାନସିକତା ପ୍ରଦାନ କରିଥାଏ । ମନକୁ ଚାପମୁକ୍ତ କରେ । ଏଇ ଆଧ୍ୟାତ୍ମିକତା ଭିତରେ ରହିଛି ଶ୍ରୀଶ୍ରୀଠାକୁରଙ୍କ ପ୍ରବର୍ତ୍ତିତ ଦୀକ୍ଷୋତ୍ତର ଜୀବନରେ ନିତ୍ୟ ନାମ-ଧ୍ୟାନ, ପ୍ରାର୍ଥନା, ଯଜନ-ଯାଜନ-ଇଷ୍ଟଭୃତି ଇତ୍ୟାଦି ପରିପାଳନ କରି ଚାଲିବା । ଏହା ବୈଜ୍ଞାନିକ କ୍ରିୟା । କିନ୍ତୁ ଆମେ ଏହାକୁ ଧର୍ମଧାରଣାର କଥା କହି ଆଡ଼େଇ ଦେଇଥାଉ । ସମ୍ପ୍ରତି ପେନିସିଲ୍‌ଭେନିଆ ବିଶ୍ୱବିଦ୍ୟାଳୟର 'ସେଣ୍ଟର ଫର୍ ସ୍ପିରିଚୁଆଲିଟି ଆଣ୍ଡ ମାଇଣ୍ଡ'ର ନିର୍ଦ୍ଦେଶକ ଡକ୍ଟର ଆଣ୍ଡ୍ରି ନିଉବର୍ଗ ଏବଂ ତାଙ୍କର ସହକର୍ମିମାନେ 'ବ୍ରେନ୍ ଇମେଜିଂ'ଦ୍ୱାରା ଜାଣିପାରିଛନ୍ତି ଯେ, ଧ୍ୟାନ ଓ ପ୍ରାର୍ଥନା ଇତ୍ୟାଦି ସମୟରେ ମନ ଚିନ୍ତାମୁକ୍ତ ଓ ପ୍ରଶାନ୍ତ ହୋଇଯାଏ । ଦୁଶ୍ଚିନ୍ତା ଦୂର ହେବା ସଙ୍ଗେ ସଙ୍ଗେ ହୃଦ୍‌ରୋଗ ଇତ୍ୟାଦି ସମ୍ଭାବନା ହ୍ରାସ ପାଇଥାଏ । ଅତଏବ, ଶ୍ରୀଶ୍ରୀଠାକୁରଙ୍କର ପଦ୍ଧତି ନାମ-ଧ୍ୟାନ, ପ୍ରାର୍ଥନା ଇତ୍ୟାଦିକୁ ତଥାକଥିତ ଧର୍ମାଚରଣ ବୋଲି ନ ଭାବି, ଜୀବନ-ବୃଦ୍ଧିଦ ଅବଶ୍ୟ ଆଚାର ଆଚରଣ ବୋଲି ଗ୍ରହଣ କରିବାକୁ ହେବ ।

ସମ୍ପ୍ରତି ବୈଜ୍ଞାନିକମାନେ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟିର ରହସ୍ୟ ଉନ୍ମୋଚନପାଇଁ ପରୀକ୍ଷା ନିରୀକ୍ଷା ଚଳାଇଛନ୍ତି । 'ବିଗ୍-ବ୍ୟାଙ୍ଗ୍' ମହାବିସ୍ଫୋରଣ ତତ୍ତ୍ୱର ଜନ୍ମ ପୂର୍ବରୁ ଶ୍ରୀଶ୍ରୀଠାକୁର ଆଦି କୃଷ୍ଣଗହ୍ୱରର ବର୍ଣ୍ଣନା ବାରମ୍ବାର ଦେଇଛନ୍ତି । ସେ ତାଙ୍କର ଭାବବାଣୀରେ ଯେଉଁସବୁ ଇଙ୍ଗିତ ଦେଇଛନ୍ତି, ବିଜ୍ଞାନିମାନେ ସେସବୁକୁ ଅନୁଧ୍ୟାନ କରିବା ଆବଶ୍ୟକ ।

ଏହି ପରିପ୍ରେକ୍ଷୀରେ ଶ୍ରୀଶ୍ରୀଠାକୁରଙ୍କ 'ସୃଜନ ପ୍ରଗତି' ବାଣିଗୁଡ଼ିକ ଅବଶ୍ୟ ଆଲୋଚ୍ୟ –

"କ୍ଷୁବ୍ଧ-ସମ୍ବେଗରେ
ଅବ୍ୟକ୍ତର ବୁକୁରେ
ଦ୍ରୁତ ବ୍ୟଞ୍ଜନାରେ
ବିଘୂର୍ଣ୍ଣିତ ସତ୍ତାର
ଉଚ୍ଛଷ୍ଟବିଚ୍ଛୁରଣ ସମ୍ବିଦ୍ଧ
ସଂଘାତ କମ୍ପିତ
ଛନ୍ଦେ ଭାସମାନ

ଶକ୍ତି-ଶରୀରୀ
ପ୍ରତିଧ୍ୱନି ହିଁ
ଆଦିବାକ୍-
ସୃଷ୍ଟିର ପ୍ରଥମ ପ୍ରଗତି ।"

× × ×

ଅବ୍ୟକ୍ତର ବୁକୁରେ
ବିସୃଷ୍ଟ-ବାକ୍-ବିଚ୍ଛୁରଣ-ନାନା ସଂଘାତରେ
କ୍ରିୟାପାରମ୍ପର୍ଯ୍ୟରେ
ପ୍ରକଟିତ ଅସମରେ
ବିଭିନ୍ନ ବ୍ୟଷ୍ଟିରେ
ଷ୍ଫୋଟପ୍ରାଣରେ ଅନୁପ୍ରାଣିତ ହୋଇ-
ସୂକ୍ଷ୍ମ ଓ ସ୍ଥୂଳରେ
ବିବର୍ତ୍ତିତ ହେଲେ !-
ଆଉ, ପରମଦୈବତ
ଜୀବନ ଓ ଜୀବରେ
ନିଜକୁ ଇତ୍ୟାକାରରେ ଉତ୍ସୃଷ୍ଟ କରି-
ଜୀବନ୍ତ ରକ୍ତମାଂସରେ
ପର୍ଯ୍ୟବସିତ କରିଲେ !"

ଶ୍ରୀଶ୍ରୀଠାକୁରଙ୍କର ବିଜ୍ଞାନ-ଭାବନାର ଅନ୍ତ ନାହିଁ । କେତେ କେତେ ବୈଜ୍ଞାନିକ ତଥ୍ୟ ଯେ ପ୍ରଦାନ କରିଛନ୍ତି, ସେସବୁ ନିଶ୍ଚିତ ଭାବେ ଆଗାମୀ ଦୁନିଆକୁ ଆଲୋକ ଦେଖାଇବ । ଶ୍ରୀଶ୍ରୀଠାକୁର ଅଭିନବ ଯନ୍ତ୍ର 'ଭାଇବ୍ରୋମିଟର' କଥା କହିଛନ୍ତି । ଅକାଳ ମୃତ୍ୟୁ ସମୟରେ (ସାପକାମୁଡ଼ା, ହାର୍ଟଫେଲ୍ ଇତ୍ୟାଦି) ଏହି ଯନ୍ତ୍ର ମାଧମରେ ଉପଯୁକ୍ତ ସ୍ପନ୍ଦନଦ୍ୱାରା କମ୍ପନ ସୃଷ୍ଟି କଲେ ମୃତ ବ୍ୟକ୍ତି ମଧ ବଞ୍ଚିଉଠିପାରେ । 'ଭାଇବ୍ରୋମିଟର' ଶବ୍ଦଟି ଶ୍ରୀଶ୍ରୀଠାକୁରଙ୍କ ନିଜସ୍ୱ; କୌଣସି ଡିକ୍‌ସିନାରୀରେ ନାହିଁ । ଏହାର ଅର୍ଥ କମ୍ପନ ସୃଷ୍ଟିକାରୀ ଯନ୍ତ୍ର । ଚିକିତ୍ସା ବିଜ୍ଞାନର ବହୁ ଉର୍ଦ୍ଧ୍ୱ ପରିକଳ୍ପନାକୁ ବାସ୍ତବାୟିତ କରାଯାଇପାରିଥିଲା ଶ୍ରୀଶ୍ରୀଠାକୁରଙ୍କ ପାଖରେ ।

ରୋଗର କାରଣ ଜାଣିଲେ ନିଦାନ ଜାଣିବା ସହଜ ହୁଏ । ସେ ସମୟରେ କୁଷ୍ଟିଆ ସହରରେ ଠାକୁରଙ୍କ ଶିଷ୍ୟମାନେ 'ନାମ-ହାସ୍‌ପାତାଲ୍' ଖୋଲନ୍ତି ଏବଂ 'ନାମ' କରିବା ମାଧ୍ୟମରେ ଡାକ୍ତରଖାନାରୁ ନିରାଶ ହୋଇ ଫେରୁଥିବା ରୋଗିମାନଙ୍କୁ ଭଲ କରୁଥିଲେ । ଏହା ଆଶ୍ଚର୍ଯ୍ୟଜନକ ବୋଧ ହେଲେ ବି ଏହାହିଁ ଥିଲା ବାସ୍ତବ ସତ୍ୟ । ଚିକିତ୍ସା ବିଜ୍ଞାନରେ ଏଲୋପ୍ୟାଥି ପଢ଼ିଥିଲେ ଛାତ୍ରାବସ୍ଥାରେ । ଗରିବ-ଅଭାବିଙ୍କ ରୋଗମୁକ୍ତ ପାଇଁ ହୋମିଓପ୍ୟାଥି ପଦ୍ଧତିରେ ଚିକିତ୍ସା କରିଥିଲେ ଏବଂ ମାନବଜାତିର ମଙ୍ଗଳପାଇଁ ଆୟୁର୍ବେଦିକ୍ ଔଷଧର ଅନେକ ଫର୍ମୁଲା ଦେଇଯାଇଛନ୍ତି ।

ଶ୍ରୀଶ୍ରୀଠାକୁର ବାୟୁମଣ୍ଡଳରେ ବିଦ୍ୟୁତ୍‌ଶକ୍ତି ଥିବାକଥା କହିଛନ୍ତି । ସୌରକଳଙ୍କର ଚୁମ୍ବକୀୟ କ୍ଷେତ୍ର କିପରି ସୂର୍ଯ୍ୟର ଅଭ୍ୟନ୍ତରକୁ ଥଣ୍ଡା ରଖୁଛି - ସେ କଥା ମଧ୍ୟ କହିଛନ୍ତି । ଯାହାକି ବୈଜ୍ଞାନିକମାନେ ଅଧୁନା ଗବେଷଣା ଜାରି ରଖୁଛନ୍ତି ।

ଶ୍ରୀଶ୍ରୀଠାକୁର ଧର୍ମକଥା କହିବାବେଳେ ବିଜ୍ଞାନର ଯେଉଁ ଉଚ୍ଚସ୍ତରର କଥାସବୁ କହିଛନ୍ତି, ସେଗୁଡ଼ିକୁ ଅନୁଶୀଳନ କଲେ ବୋଧହୁଏ ଯେ ଧର୍ମ ଓ ବିଜ୍ଞାନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଧର୍ମଧ୍ୱଜାଧାରୀ ଏବଂ ଧର୍ମକୁ ଅସ୍ୱୀକାର କରୁଥିବା ବିଜ୍ଞାନିଗଣ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଯାଇ ଗବେଷଣା ଜାରି ରଖିବା ଉଚିତ । ଶ୍ରୀଶ୍ରୀଠାକୁର ବୈଜ୍ଞାନିକମାନଙ୍କୁ ସତର୍କ କରାଇ ଦେଇ କହିଛନ୍ତି –

"ତୁମେ ଅୟୁତ ହସ୍ତରେ
ଅୟୁତ ବୋଧନା ନେଇ
ବିଜ୍ଞାନର ଅନୁଶୀଳନ କରନା କାହିଁକି,-
ଯେତେକ୍ଷଣ ତା ସତ୍ତାପୋଷଣୀ ନ ହୋଇ ଉଠିଛି,
ତା' ସେବେ ବି ଧର୍ମଦ ହୋଇଉଠେନି,
ଯେଉଁ ବିଜ୍ଞାନ ଯାହାକିଛିକୁ ବାସ୍ତବ ବିନାୟନରେ
ସାତ୍ତ୍ୱିକ ଧୃତିର ଅନୁପୋଷଣରେ
ଅର୍ଥାତ୍ ସତ୍ତା-ସଂସ୍ଥିତିକୁ ଧରିରଖି
ବର୍ଦ୍ଧନ-ବିଭୂତିସମ୍ପନ୍ନ କରି ତୋଳେ





ତାହାହିଁ କିନ୍ତୁ ଧର୍ମ
ଆଉ ତାହା ଯେତେବେଳେ
ସତ୍ତା-ସଂସ୍ଥିତିକୁ ବିଧ୍ୱସ୍ତ କରି ତୋଳେ,
ଅଧର୍ମ କିନ୍ତୁ ସେଠାରେ ହିଁ
ଧର୍ମ ମାନେହିଁ ତାହା-
ଯାହା ସତ୍ତାକୁ
ସଂସ୍ଥିତିକୁ
ଧାରଣ କରେ
ରକ୍ଷଣ କରେ
ପୋଷଣରେ ସ୍ଥିତିବାନ୍ କରି ତୋଳେ
ବିରୁଦ୍ଧ ଯାହା
ତା'ର ସମୀଚୀନ ନିରୋଧରେ ଓ ଶୁଭ ବିନାୟନରେ;
ଯେନାତ୍ମନସ୍ତଥାନ୍ୟେଷାଂ ଜୀବନଂ ବର୍ଦ୍ଧନଞ୍ଚାପି ଧ୍ରିୟତେ, ସ ଧର୍ମଃ ।"

ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ଧର୍ମଧାରଣା ଓ ବିଜ୍ଞାନ ଭାବନା ଉପରୋକ୍ତ ବାଣୀରେ ସୁସ୍ପଷ୍ଟ । ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ଜୀବନଚର୍ଯ୍ୟାରେ ମଧ୍ୟ ଆଧ୍ୟାତ୍ମିକତା ପରିସ୍ଫୁଟ ହୋଇଉଠିଥିଲା । ବୁଦ୍ଧ ଏବଂ ଯିଶୁଙ୍କ ପ୍ରବର୍ତ୍ତିତ ମାର୍ଗ ଓ ଗାନ୍ଧିଜୀଙ୍କ ଜୀବନଧାରାରେ ସେ ଅନୁପ୍ରାଣିତ ଥିଲେ । ଶ୍ରୀଶ୍ରୀଠାକୁର ଅନେକଥର କହିଛନ୍ତି – "ମୋ ମନରେ ଅନେକ ବିଜ୍ଞାନ କଥାର ଛବି ଚଳଚ୍ଚିତ୍ରପରି ଆସେ, ସେଗୁଡ଼ିକୁ ବାସ୍ତବାୟିତ କରିବାପାଇଁ ଉପଯୁକ୍ତ ଲୋକ ଖୋଜି ପାଉ ନାହିଁ ।" ପୁଣି କହିଛନ୍ତି – "Death is a curable disease' ତାହାର ଚିକିତ୍ସା ସମ୍ଭବ । ଏହିପରି ଅନେକ ବାଣୀ, କଥା, ଆଲୋଚନା ଇତ୍ୟାଦିରୁ ଶ୍ରୀଶ୍ରୀଠାକୁରଙ୍କର ବିଜ୍ଞାନ ଭାବନା ଜାଣିହୁଏ । ପୁରୁଷୋତ୍ତମ ପରମବିଜ୍ଞାନୀ । ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଜ୍ଞାନ-ବିଜ୍ଞାନର ସେ ମୂର୍ତ୍ତିମନ୍ତ ବିଗ୍ରହ ।

*(ଜଗତ୍‌ସିଂହପୁର ସତ୍‌ସଙ୍ଗ ବିହାରର ପତ୍ରିକା 'କୃତି-ଦୀପାଳୀ'ରେ ପ୍ରକାଶିତ)*







# ପରିବେଶତତ୍ତ୍ୱର ବୈଦିକ ଚିନ୍ତନ

ଏକବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ ମାନବ ଜାତି ଆଗରେ ଅସୁମାରୀ ସମସ୍ୟା ଓ ଏହି ସମସ୍ୟା ସମାଧାନପାଇଁ ଜ୍ଞାନ ବିଜ୍ଞାନର ଦାନ ଅନବଦ୍ୟ । ତଥାପି ସମସ୍ୟାର ଅନ୍ତ ନାହିଁ, ଜ୍ଞାନ ବିଜ୍ଞାନ ଅଗ୍ରଗତି କରିଚାଲିଛି; ସମସ୍ୟା ବି ବଢ଼ିଚାଲିଛି । ବେଳେ ବେଳେ ମନେ ହୁଏ ଅନେକ ସୁବିଧା ସୁଯୋଗ ଓ ଉଦ୍ଭାବନା ଆମପାଇଁ ଯେପରି ଅଭିଶାପ ପାଲଟିଛି, କିଏ କହୁଛି ଟି.ଭି., ମୋବାଇଲ୍, କଳକାରଖାନା ଆମର ପରମ୍ପରା ଓ ଜୀବନଧାରାକୁ ନଷ୍ଟ କରିପକାଉଛି । ଅନ୍ୟ କେତେକଙ୍କ ମତରେ ଏଗୁଡ଼ିକ ନ ଥିଲେ ଆମ ସଭ୍ୟତା ସ୍ଥାଣୁ ପାଲଟି ଯିବ ଇତ୍ୟାଦି ଭିନ୍ନ ମତ । ଦୁଇ ପ୍ରକାର ମତବାଦର ଆଂଶିକ ସତ୍ୟତା ନିଶ୍ଚୟ ରହିଛି । ଏହିଭଳି ଏକ ସମୟର ପ୍ରାରମ୍ଭରେ ସମଗ୍ର ମାନବଜାତି ପରିବେଶ ଅବକ୍ଷୟ ସମ୍ବନ୍ଧୀୟ ସମସ୍ୟାରେ ଜର୍ଜରିତ ଏବଂ ତା'ର ନିରାକରଣପାଇଁ ଚେଷ୍ଟିତ ।



ପରିବେଶ କହିଲେ, ଚତୁଃପାର୍ଶ୍ୱରେ ଥିବା ସଜୀବ ଓ ନିର୍ଜୀବ ବସ୍ତୁକୁ ନେଇ ଗଠିତ ପରିସଂସ୍ଥାକୁ ବୁଝାଇ ଥାଏ । ପରିବେଶ ମଣିଷର ଅସ୍ତି ଓ ବୃଦ୍ଧିର

ଭିତ୍ତିଭୂମି । ତା'ର ଜୀବନ ଓ ଜୀବିକା ପ୍ରଭାବିତ ହୋଇଥାଏ ପରିବେଶଦ୍ୱାରା । ମଣିଷ ନିଜେ ଓ ଅନ୍ୟାନ୍ୟ ଜୀବ ପରିବେଶରେ ପରିବର୍ତ୍ତନ ଘଟାଇଥା'ନ୍ତି । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଥିଓଫ୍ରଷ୍ଟସ ନାମକ ଜଣେ ବୈଜ୍ଞାନିକ ମଣିଷ ଓ ପରିବେଶ ସମ୍ପର୍କରେ ପ୍ରଥମେ ଅଧ୍ୟୟନ କରିଥିଲେ ଏବଂ ବିଶଦ ଧାରଣା ପ୍ରଦାନ କରିଥିଲେ । ଏହାର ବହୁ ପୂର୍ବରୁ ଭାରତର ପ୍ରାଚୀନ ବୈଦିକଜନିତ ସମସ୍ୟା, ଜୈବ ବିବିଧତା, ପରିବେଶ ସୁରକ୍ଷା ଲାଗି ପରିଚ୍ଛେଦ ଇତ୍ୟାଦି ବିଷୟରେ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି । ଏହି ଉକ୍ତିକୁ ପ୍ରତିପାଦିତ କରିବାକୁ ଯାଇ ଆମ ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି କୁହନ୍ତି – "Modern man must re-establish an unbroken link with nature and with life. He must again learn to like energy of growing things and to recognise it, as the ancient in India centuries ago did." ବୈଦିକ ଗ୍ରନ୍ଥାରେ ପରିବେଶ ତତ୍ତ୍ୱକୁ "ପଞ୍ଚମହାଭୂତ" ମାଧ୍ୟମରେ ପ୍ରତିପାଦିତ କରାଯାଇଛି । କ୍ଷିତ୍, ଅପ୍, ତେଜ୍, ମରୁତ ଓ ବ୍ୟୋମ – ମାଟି, ପାଣି, ପବନ, ଶକ୍ତି ଓ ଆକାଶ ଏହି ପଞ୍ଚମହାଭୂତରେ ସମଗ୍ର ବିଶ୍ୱଚରାଚର ସୃଷ୍ଟି । ପ୍ରାକୃତିକ ପରିବେଶ ଓ ଜୈବିକ ବସ୍ତୁ ମଧ୍ୟରେ ଥିବା ଘନିଷ୍ଠ ସମ୍ପର୍କ ବିଷୟ ଆମର ପ୍ରାଚୀନ ଗ୍ରନ୍ଥରେ ଦେଖିବାକୁ ମିଳେ । ଅଥର୍ବ ବେଦରେ ପ୍ରକୃତି ଉଦ୍ଦେଶ୍ୟରେ ଋଷି କଣ୍ଠରୁ ସ୍ୱତଃ ଉଚ୍ଚାରିତ ହୋଇଥିଲା – ମୁଁ ତୁମର (ପ୍ରକୃତିର) ହୃଦୟକୁ vital ଅପଘାତ ନ ପହଞ୍ଚାଏ । ଏହା ଭିତରେ ମଣିଷକୁ ଖାଦ୍ୟ ଶୃଙ୍ଖଳ (food chain)ର କଥା ଉଲ୍ଲେଖ କରାଯାଇଛି –

"ସର୍ବଂ ବ୍ୟାପ୍ତମିଦଂ ବ୍ରହ୍ମନ୍ ସର୍ବାଭିଃ ପ୍ରାଣୀ ଜୀବନୈଃ ।
ସତ୍ୟୈଃ ସତ୍ୟାନି ଜୀବନ୍ତି ବହୁଧାଦ୍ୱିଜ ସତ୍ତମ ।
ପ୍ରାଣୀନୋଽନ୍ୟୋନ୍ୟ ଭକ୍ଷାଶ୍ଚ ତତ୍ର କିଂ ବିଚିତ୍ରତା ।।"

ଅର୍ଥାତ୍ ସଚରାଚର ପୃଥିବୀରେ ଦେଖାଯାଏ ଯେ ଗୋଟିଏ ପ୍ରାଣୀ ଅନ୍ୟ ଏକ ପ୍ରାଣୀ ଉପରେ ନିର୍ଭରଶୀଳ ଏବଂ ପୃଥିବୀ ପୃଷ୍ଠରେ ଦେଖାଯାଉଥିବା ସମସ୍ତ ଜୈବ ରାସାୟନିକ ଚକ୍ର ସଙ୍ଗଠନରେ ପରସ୍ପର ପରସ୍ପର ଉପରେ ନିର୍ଭରଶୀଳ । 'ମନୁସ୍ମୃତି'ରେ ଜୈବ ବିବିଧତା (Biodiversity)କୁ ସୁନ୍ଦର ଭାବରେ ବିଭକ୍ତିକରଣ

